# ଜବାହରଲାଲ୍ ନେହେରୁ

( ଜୀବନୀ )

ଲେଖିକା :
ଶ୍ରୀମତୀ ସନ୍ଧ୍ୟା ପଟ୍ଟନାୟକ
ବି. ଏସ୍. ସି., ବି. ଏଡ୍ (ଉତ୍କଳ)
ପ୍ରଧାନ ଶିକ୍ଷୟିତ୍ରୀ
ପାହାଲ ଅପ୍‌ଗ୍ରେଡେଡ୍ ଏମ୍. ଇ. ସ୍କୁଲ
ପାହାଲ, ଜି : ପୁରୀ

ପ୍ରକାଶକ :
ଉତ୍କଳ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ
ବାଲୁବଜାର, କଟକ-୨

# ଜବାହରଲାଲ୍ ନେହେରୁ

ଜୀବନୀମାଳା ୧୦ମ ଖଣ୍ଡ


ଲେଖିକା :

**ଶ୍ରୀମତୀ ସନ୍ଧ୍ୟା ପଟ୍ଟନାୟକ**

ବି. ଏସ୍. ସି. ବି. ଏଡ୍ (ଉତ୍କଳ)

ପ୍ରଧାନ ଶିକ୍ଷୟିତ୍ରୀ

ପାହାଲ ଅପ୍‌ଗ୍ରେଡେଡ୍ ଏମ୍: ଇ: ସ୍କୁଲ

ପାହାଲ, ଜି: ପୁରୀ



ପ୍ରକାଶକ :

**ଇଉନାଇଟେଡ୍ ବୁକ୍ ହାଉସ**

ବାଲୁବଜାର, କଟକ-୨

ନୂତନ ମୁଦ୍ରଣ :

ରାଖୀପୂର୍ଣ୍ଣିମା ୧୯୯୦

ମୁଦ୍ରଣ :

**ମେଘମାଳା ପ୍ରିଣ୍ଟର୍ସ**

କଟକ-୧

ମୂଲ୍ୟ :

**ପାଞ୍ଚଟଙ୍କା ମାତ୍ର**

# ବାଲ୍ୟ ଜୀବନ

ପାଞ୍ଚ, ଛଅ ବର୍ଷର ପିଲାଟିଏ । କଲମ ଧରି ଲେଖିବା ପାଇଁ ତାର ଭାରି ଇଚ୍ଛା । ଦିନେ ବାପାଙ୍କ ଟେବୁଲ ଉପରେ ଥିବା ଦୁଇଟି କଲମରୁ ସେ ଗୋଟିଏ ତା' ପକେଟ୍‌ରେ ଲୁଚାଇ ନେଇ ଆସିଲା । ପିଲାଟି ଭାବିଲା ବାପା ନିଶ୍ଚୟ ଗୋଟିଏ କଲମରେ ଲେଖୁଥିବେ । ସଞ୍ଜବେଳକୁ ବାପା ଫେରିଆସି ଦୁଇଟି କଲମରୁ ଗୋଟିଏ ନ ଥିବା ଦେଖି ଖୁବ୍ ରାଗିଗଲେ । ମାଡ଼ ଭୟରେ ପିଲାଟି କଲମ ନେଇଥିବା କଥା କହି ନ ଥିଲା । ପରେ ତା' ପକେଟରୁ କଲମଟି ମିଳିଥିଲା ଓ ତାର ବାପା ରାଗିଯାଇ ପିଲାଟିକୁ ଖୁବ୍ ମାଡ଼ ଦେଇଥିଲେ । ପିଲାଟି ଲଜ୍ଜା ଓ ଯନ୍ତ୍ରଣାରେ ତାର ମା'ର କୋଳରେ ଆଶ୍ରୟ ନେଇଥିଲା । ମାଡ଼ ଟିକିଏ ଜୋର ହୋଇଯାଇ ଥିବାରୁ ତାର ଦେହ କ୍ଷତରେ କିଛିଦିନ ଔଷଧ ମାଲିସ୍ କରିବାକୁ ପଡ଼ିଥିଲା ।

ସେଦିନର ଏହି ଭୟାକୁଳ କଲମଚୋର ପିଲାଟି କିଏ ଆପଣ ଜାଣନ୍ତି ? ସେ ହେଉଛନ୍ତି ଆମ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁ । ସେ ୧୮୮୯ ମସିହା ନଭେମ୍ବର ମାସ ୧୪ ତାରିଖରେ ଏଲାହାବାଦରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ମୋତିଲାଲ ନେହେରୁ ଓ ମାତାଙ୍କ ନାମ ସ୍ୱରୂପାରାଣୀ । ମୋତିଲାଲ ଥିଲେ ଜଣେ ବିଖ୍ୟାତ

ଓକିଲ । ମୋତିଲାଲ ଓ ସ୍ୱରୂପାରାଣୀ ଉଭୟ ଥିଲେ କାଶ୍ମୀରୀ ବ୍ରାହ୍ମଣ । ଜବାହରଙ୍କୁ ୧୧ ବର୍ଷ ହେବାପରେ ତାଙ୍କର ଭଉଣୀ ବିଜୟଲକ୍ଷ୍ମୀ ପଣ୍ଡିତ ଜନ୍ମଗ୍ରହଣ କରିଥିଲେ । ତୁଳସୀପତ୍ର ଦୁଇ ପତ୍ରରୁ ବାସିଲା ପରି ଜବାହର ବଡ଼ ହେଲେ ଯେ ଜଣେ ବଡ଼ ଲୋକ ହେବେ ତାହା ତାଙ୍କ ପିଲାଦିନର ନିମ୍ନଲିଖିତ କେତୋଟି ଘଟଣାରୁ ସ୍ପଷ୍ଟ ଜଣାପଡ଼ିଥିଲା ।

ପିଲାଦିନେ ଜବାହରଲାଲ ସଞ୍ଜବେଳେ ତାଙ୍କ ଘରେ ଥିବା ବୁଢ଼ା ଚାକର ମୁନ୍‌ସୀଠାରୁ ପରୀ ରାଇଜ ଓ ରଜାପୁଅ ଗପ ଶୁଣିବାକୁ ଭାରି ଭଲ ପାଉଥିଲେ । ରଜାପୁଅ ପକ୍ଷୀରାଜ ଘୋଡାରେ ଚଢ଼ି ଦେଶ ଜୟ କରିବା କଥା ଶୁଣି ତାଙ୍କର ମଧ୍ୟ ଘୋଡ଼ାରେ ଚଢ଼ି ଦେଶ ଜୟ କରିବାକୁ ପ୍ରବଳ ଇଚ୍ଛା ହେଲା । ସେ ଦିନେ ତାଙ୍କ ଘରେ ଥିବା ଘୋଡ଼ାକୁ ନେଇ ତା ଉପରେ ଚଢିବାକୁ ଯିବା ସମୟରେ ଘୋଡ଼ା ତାଙ୍କୁ ପକାଇ ଦେଇ ଆଗକୁ ଦୌଡ଼ି ଚାଲିଗଲେ । ସେ ଘୋଡ଼ା ପିଠିରୁ ପଡ଼ି ଖଣ୍ଡିଆ ଖାବରା ହୋଇଗଲେ । କିନ୍ତୁ ସେଥିପ୍ରତି ଖାତିର ନ କରି ଘରକୁ ଫେରିଆସିଲେ । ଏଥିରୁ ତାଙ୍କର ସାହାସୀକତାର ପରିଚୟ ମିଳେ ।

ଥରେ ଶିକାର କରିବାକୁ ତାଙ୍କର ଖୁବ୍ ଇଚ୍ଛା ହେଲା । ସେ ଗୋଟିଏ ବନ୍ଧୁକ ଧରି ଜଙ୍ଗଲକୁ ଗଲେ । ଗୋଟିଏ ହରିଣଛୁଆକୁ ଲକ୍ଷ୍ୟ କରି ଗୁଳି ମାରିଲେ । ହରିଣଛୁଆଟି ସେଇଠାରେ ଟଳିପଡ଼ିଲା । ଜବାହର ଖୁସିହୋଇ ତା ପାଖକୁ ଦୌଡ଼ିଯାଇ ଦେଖିଲେ ତା ଦେହରୁ ରକ୍ତ ଧାର ଧାର ହୋଇ ବହିଯାଉଛି । ପାଟିରେ କେତୋଟି ଘାସ ରହିଛି ଓ ସେ ଯନ୍ତ୍ରଣାରେ ଛଟପଟ ହେଉଛି । ତାର ମାଆ ତା ଆଡ଼କୁ ବିକଳରେ ଅନାଇ

ଆଖିରୁ ଲୁହ ଝରୁଥିଲା । ସେ ବନ୍ଧୁକଟି ସେଠାରେ ଫୋପାଡ଼ି ଦେଇ ସେନ୍ଦିନଠାରୁ ପ୍ରତିଜ୍ଞା କଲେ ଆଉ ଜୀବନରେ କେବେହେଲେ ଶିକାର କରିବେନ ଏବଂ ଏହି ପ୍ରତିଜ୍ଞା ସେ କେବେହେଲେ ଭାଙ୍ଗି ନ ଥିଲେ ।

ଜବାହରଙ୍କର ଏହିସବୁ ପାରିପାର୍ଶ୍ୱିକ ଓ ବ୍ୟକ୍ତିଗତ ପ୍ରଭାବ ତାଙ୍କର ବାଲ୍ୟଶିକ୍ଷା ଉପରେ ପଡ଼ିଥିଲା । ବ୍ରୁକ୍ସ୍ ସାହେବ ତାଙ୍କ ଶିକ୍ଷାର ଭାର ନେଇଥିଲେ । ସେ ଆନି ବେସାନ୍ତଙ୍କର ପଥପ୍ରଦର୍ଶକ ଥିଲେ । ବ୍ରୁକ୍ସ ଯଦିଓ ଜଣେ ପାଶ୍ଚାତ୍ୟ ଦେଶର ଲୋକ ଥିଲେ ଭାରତୀୟ ସଂସ୍କୃତି ପ୍ରତି ତାଙ୍କର ଖୁବ୍ ଶ୍ରଦ୍ଧା ଓ ସମ୍ମାନ ଥିଲା । ସେ ସରଳ ଜୀବନଯାପନ ଓ ଉଚ୍ଚଚିନ୍ତାରେ ବିଶ୍ୱାସ ରଖିଥିଲେ । ସେ ନିଜେ ନିରାମିଷାଶୀ ଥିଲେ ଓ କୌଣସି ମାଦକ ଦ୍ରବ୍ୟ ସ୍ପର୍ଶ କରୁ ନ ଥିଲେ । ବ୍ରୁକ୍ସ୍ଙ୍କ ପ୍ରଭାବରେ ନେହେରୁ ଗୀତା, ଉପନିଷଦ୍ ପ୍ରଭୃତି ଧର୍ମଗ୍ରନ୍ଥ ମାନଗୁଡ଼ିକ ପଢ଼ିବାରେ ଆଗ୍ରହ ପ୍ରକାଶ କରିଥିଲେ । ସେ ନେହେରୁଙ୍କ ମନରେ ସ୍କଟ୍, ଡିକେନ୍ସ, ଥାକେରେ, ଓ୍ୱେଲସ୍, ମାର୍କଟ୍ୱେନ୍ ପ୍ରଭୃତି ଲେଖକଙ୍କ ରଚନା ପ୍ରତି ଆଗ୍ରହ ଜନ୍ମାଇଥିଲେ । "ଆନନ୍ଦ ଭବନ"ର ଗୋଟିଏ କୋଠରୀରେ ନେହରୁଙ୍କ ପାଇଁ ସେ ଗୋଟିଏ ବିଜ୍ଞାନ ପରୀକ୍ଷାଗାର ସ୍ଥାପନ କରି ବିଭିନ୍ନ ପରୀକ୍ଷା ଦେଖାଇ ବିଜ୍ଞାନ ଶିକ୍ଷା ପ୍ରତି ଆଗ୍ରହ ଜନ୍ମାଇଥିଲେ । ନେହରୁଙ୍କୁ ଉଚ୍ଚଶିକ୍ଷା ଦେବାପାଇଁ ଇଂଲଣ୍ଡର 'ହାରୋ' ସ୍କୁଲରେ ନାମ ଲେଖାଇବାକୁ ତାଙ୍କର ପିତା ମୋତିଲାଲ ମନସ୍ଥ କଲେ । ୧୯୦୫ ମସିହାରେ ଯେତେବେଳେ ତାଙ୍କୁ ୧୫ ବର୍ଷ ତାଙ୍କର ପିତା, ମାତା ଓ ଜ୍ୟେଷ୍ଠ ଭଉଣୀ ବିଜୟଲକ୍ଷ୍ମୀଙ୍କ ସହ ସେ ଭାରତରୁ ଇଂଲଣ୍ଡ ଯାତ୍ରା କରିଥିଲେ । ନେହେରୁଙ୍କ ନାମ ଲେଖା ସରିଗଲା ଓ ତାଙ୍କର ପିତାମାତା କିଛିଦିନ ସେଠାରେ ରହି

ଭାରତ ଫେରି ଆସିଥିଲେ । ହାରୋରେ ସେ ପ୍ରଥମେ ଲଜ୍ଜା ଓ ନିଃସଙ୍ଗ ବୋଧ କରୁଥିଲେ । କୌଣସି ଖେଳରେ ସେ ଯୋଗ ଦେଉ ନ ଥିଲେ ।

ସେ ପାଠ୍ୟପୁସ୍ତକ ପଢ଼ିବା ସଙ୍ଗେ ସଙ୍ଗେ ଦେଶ ବିଦେଶର ପତ୍ରପତ୍ରିକା ପଢ଼ିବାକୁ ଖୁବ୍ ଭଲ ପାଉଥିଲେ । ୧୯୦୫ ମସିହା ଶେଷ ଭାଗରେ ବ୍ରିଟିଶ୍ ପାର୍ଲାମେଣ୍ଟର ନିର୍ବାଚନ ହୋଇଥାଏ । ଶିକ୍ଷକ ନିର୍ବାଚନ ଫଳ ସମ୍ବନ୍ଧରେ ଶ୍ରେଣୀରେ କେତୋଟି ପ୍ରଶ୍ନ ପଚାରିଥିଲେ । ଇଂଲଣ୍ଡର ଛାତ୍ରମାନେ ଏହାର ଉତ୍ତର ଦେବାକୁ ସକ୍ଷମ ହୋଇ ନ ଥିଲେ, କିନ୍ତୁ ଜବାହର ତାର ଉତ୍ତରଗୁଡ଼ିକ ନିର୍ଭୁଲ ଭାବରେ ଦେଇ ସମସ୍ତଙ୍କୁ ଆଚମ୍ବିତ କରି ଦେଇଥିଲେ । ଶିକ୍ଷକ ଭାବିଥିଲେ ନିଶ୍ଚୟ ଏହି ଭାରତୀୟ ଛାତ୍ରଟି ଦିନେ ଭବିଷ୍ୟତରେ ଜଣେ ବଡ଼ ମଣିଷ ହେବ । ସେହି ଶିକ୍ଷାନୁଷ୍ଠାନରେ ପଢ଼ିବା ସମୟରେ ସେ ଅନେକ ପୁରସ୍କାର ପାଇଥିଲେ । ସେଥିମଧ୍ୟରୁ ଟ୍ରେଭେଲିଅନ୍‌ଙ୍କ ପ୍ରଣୀତ "ଗାରିବାଲ୍‌ଡ଼ିଙ୍କ ଜୀବନୀ" ଅନ୍ୟତମ । ସେ ଉକ୍ତ ଗ୍ରନ୍ଥଟି ପଢ଼ି ଇଟାଲୀୟ ଜାତୀୟ ଜାଗରଣ ପ୍ରତି ଏତେ ବିଭୋର ହୋଇ ପଡ଼ିଥିଲେ ଯେ ସେହି ଘଟଣାଗୁଡ଼ିକ ହିଁ ତାଙ୍କ ମନରେ ଭାରତୀୟ ସଂଗ୍ରାମ ପାଇଁ ବାଟ ଦେଖାଇଥିଲା ।

୧୯୦୭ ମସିହାରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଟ୍ରିନିଟି କଲେଜରେ ନାମ ଲେଖାଇଲେ । ତାଙ୍କୁ ସେତେବେଳେ ୧୮ ବର୍ଷ ବୟସ । କଲେଜର ମୁକ୍ତ ବାତାବରଣ ତାଙ୍କୁ ଖୁବ୍ ଭଲ ଲାଗୁଥିଲା । ଏହି ପରିବେଶରେ ସେ ସମସ୍ତଙ୍କ ସହିତ ଖୁବ୍ ଶୀଘ୍ର ମିଶି ପାରିଥିଲେ ଓ ତାଙ୍କର ଚିନ୍ତାଧାରା ଖୁବ୍ ଉନ୍ନତ ହୋଇ ଯାଇଥିଲା । କଲେଜରେ ଅଧ୍ୟୟନ ପାଇଁ ସେ ପ୍ରାକୃତିକ ବିଜ୍ଞାନକୁ ବାଛି ନେଇଥିଲେ । ରସାୟନ ବିଜ୍ଞାନ ଓ ଉଦ୍ଭିଦ ବିଜ୍ଞାନର ଛାତ୍ର

ଥିଲେ ମଧ୍ଯ ସେ ସାହିତ୍ୟ ଓ ରାଜନୀତି ଶାସ୍ତ୍ର ପ୍ରତି ଅଗ୍ରହ ପ୍ରକାଶ କରୁଥିଲେ । ସେ ବିଶ୍ଵବିଦ୍ୟାଳୟର ଛାତ୍ର ଥିଲାବେଳେ ସଭା-ସମିତିରେ ଭାଷଣ ଦେବାକୁ ଗାନ୍ଧିଙ୍କ ଭଳି ଲଜ୍ଜାବୋଧ କରୁଥିଲେ । କେମ୍ବ୍ରିଜ୍‌ରୁ ବିଦାୟ ନେବା ପରେ ସେ ଆଇନ୍ ଶାସ୍ତ୍ର ଅଧ୍ୟୟନ କଲେ । ସେ ସେହି ସମୟରେ ଖୁବ୍ ବିଳାସ ବ୍ୟସନରେ ତାଙ୍କର ସମୟ ଅତିବାହିତ କରୁଥିଲେ । ଆଇନ୍ ବିଦ୍ୟାର କୃତିତ୍ଵ ହାସଲ କଲାବେଳକୁ ତାଙ୍କର ଏକ ପ୍ରକାର ଅବଜ୍ଞାତ୍ମକ ମନୋଭାବ ପ୍ରକାଶ ପାଇଥିଲା ।

## ଓକିଲାତି ଓ ଭାରତୀୟ ସ୍ଵାଧୀନତା ସମ୍ପର୍କରେ ଚିନ୍ତା

ବିଲାତରୁ ଫେରି ସେ ଆହ୍ଲାବାଦ ହାଇକୋର୍ଟରେ ଓକିଲାତି ଆରମ୍ଭ କଲେ । ପିତାଙ୍କର ବହୁପଣ ପଡ଼ାପଡ଼ି କରି ମକଦ୍ଦମା ପରିଚାଳନାରେ ସକ୍ରିୟ ଅଂଶ ଗ୍ରହଣ କଲେ । ପରେ ତାଙ୍କୁ ଓକିଲାତି ଜୀବନ ଭଲ ଲାଗି ନ ଥିଲା । ତେଣୁ ସେ ସ୍ଵାଧୀନତା ସଂଗ୍ରାମରେ ଯୋଗଦାନ କରି ଭାରତର ସ୍ଵାଧୀନତା କେବେ ଆସିବ ତାର ସ୍ଵପ୍ନ ଦେଖିବାକୁ ଲାଗିଲେ । ଦେଶର ରାଜନୈତିକ ପରିସ୍ଥିତି ତାଙ୍କ ଉପରେ ପ୍ରଭାବ ବିସ୍ତାର କଲା । କେଭୁର୍, ଗାରିବାଲ୍ଡି ପ୍ରଭୃତି ଇଟାଲୀୟ ସ୍ଵାଧୀନତା ସଂଗ୍ରାମୀମାନେ ତାଙ୍କ ହୃଦୟରେ ପୁନର୍ଜାଗରିତ ହେବାକୁ ଲାଗିଲେ । ସେ କ୍ରମେ କ୍ରମେ ରାଜନୀତି ସମ୍ପର୍କୀୟ ଆଲୋଚନାମାନଙ୍କରେ ଅଂଶ ଗ୍ରହଣ କରିବାକୁ ଆରମ୍ଭ କଲେ । ପ୍ରାଦେଶିକ କଂଗ୍ରେସ କମିଟି ଓ ଗୋଖେଲଙ୍କର "ଭାରତ ସେବକ ସମାଜ" ପ୍ରତି ଆକୃଷ୍ଟ ହେଲେ । ଭାରତର ସ୍ଵାଧୀନତା ଆଣିବାପାଇଁ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ଯେଉଁ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିଥିଲେ—ଯୁବକ ନେହେରୁ ତାଙ୍କର ଏହି

ଆଦର୍ଶରେ ଅନୁପ୍ରାଣିତ ହୋଇ ପାରଥିଲେ । ଗାନ୍ଧୀଜୀ ଭାରତର ସ୍ୱାଧୀନତା ସଂଗ୍ରାମ ଆଣିବା ପାଇଁ ଦୁଇଟି ଅମୋଘ ଅସ୍ତ୍ର ବ୍ୟବହାର କରିଥିଲେ । ସେ ଦୁଇଟି ହେଲା ଅହିଂସା ଓ ଅସହଯୋଗ ।

## ବିବାହ

ନେହେରୁ ବିଲାତରୁ ଫେରିବା ପୂର୍ବରୁ ତାଙ୍କର ମାଆ ସ୍ୱରୂପାରାଣୀ ତାଙ୍କ ପାଇଁ ପ୍ରସିଦ୍ଧ କାଶ୍ମୀରୀ ବ୍ରାହ୍ମଣ ଓ ବ୍ୟବସାୟୀ ଅର୍ଜୁନଲାଲ କାଉଲଙ୍କର ସୁପୁତ୍ରୀ କମଳା ଦେବୀଙ୍କୁ ତାଙ୍କର ପୁତ୍ରବଧୂ ରୂପେ ମନୋନୀତ କରିଥିଲେ । କମଳାଙ୍କ ବୟସ ସେତେବେଳେ ସତର ବର୍ଷ । ସୁନ୍ଦରୀ, ସ୍ୱାଧୀ, ଶିକ୍ଷିତା ଓ ସ୍ୱାସ୍ଥ୍ୟବତୀ କମଳାଙ୍କର ୧୯୧୬ ମସିହା ଫେବୃୟାରୀ ୮ ତାରିଖରେ ନୂଆଦିଲ୍ଲୀଠାରେ ଜବାହରଲାଲ ନେହେରୁଙ୍କ ସହିତ ବିବାହ ସମ୍ପନ୍ନ ହୋଇଥିଲା । ବିବାହକାର୍ଯ୍ୟ ଖୁବ୍ ଆଡ଼ମ୍ବର ସହକାରେ ସମାହିତ ହୋଇଥିଲା ।

## ଇନ୍ଦିରାଙ୍କ ଜନ୍ମ

ବିବାହର ୨୧ ମାସ ପରେ ୧୯୧୭ ମସିହା ନଭେମ୍ବର ୧୯ ତାରିଖରେ ପ୍ରିୟଦର୍ଶିନୀ ଇନ୍ଦିରା ଜନ୍ମଗ୍ରହଣ କରିଥିଲେ । ସେ ଜନ୍ମହେବା ପରେ ତାଙ୍କର ମାଆ କମଳାଙ୍କର ସ୍ୱାସ୍ଥ୍ୟ ଖରାପ ହୋଇପଡିଲା । ଜବାହରଲାଲ ତାଙ୍କର ସ୍ତ୍ରୀ କମଳା ଦେବୀ ଓ ରୁଗ୍ଣା ମାତା ସ୍ୱରୂପାରାଣୀଙ୍କ ସ୍ୱାସ୍ଥ୍ୟ ପାଇଁ ବିଶେଷ ଚିନ୍ତିତ ହୋଇ ପଡ଼ିଥିଲେ ।

## କୃଷକ ପରିବାରର ପ୍ରତ୍ୟକ୍ଷ ଅନୁଭୂତି

୧୯୨୦ ମସିହାର ଶେଷଭାଗରେ ମୋତିଲାଲ ମହାତ୍ମା ଗାନ୍ଧୀଙ୍କ ସହିତ ଯୋଗଦେବେ ବୋଲି ସ୍ଥିର କରିଥିଲେ ଓ ଆନନ୍ଦ ଭବନରେ ନିରାଡ଼ମ୍ବର ଜୀବନଯାପନ କରିଥିଲେ । ସେ ତାଙ୍କର ଘୋଡ଼ା ଓ ରଥ ସବୁ ବିକି କରି ଦେଇଥିଲେ । ଚାକର ସଂଖ୍ୟା ମଧ୍ୟ ଖୁବ୍ କମାଇ ଦେଇଥିଲେ । ତାଙ୍କ ପରିବାରର ଲୋକମାନେ ଖଦଡ଼ ପୋଷାକ ପିନ୍ଧିବାକୁ ଆରମ୍ଭ କରିଥିଲେ । ଏହି ସମୟରେ ଜବାହରଲାଲ ଶୁଣିବାକୁ ପାଇଥିଲେ ଯେ କୃଷକମାନେ ନୃଶଂସ ଜମିଦାରମାନଙ୍କ ଦ୍ଵାରା କିପରି ଅତ୍ୟାଚାରିତ ହେଉଛନ୍ତି । ଏହାର ସତ୍ୟତା ଜାଣିବା ପାଇଁ ସେ କୃଷକମାନଙ୍କ ପରିବାରରେ ତିନଦିନ କଟାଇ ସେମାନେ କିପରି ଦାରିଦ୍ର୍ୟ ଓ ଦୁଃଖରେ ଦିନ କଟାଉଛନ୍ତି ତାହା ଠିକ୍ ଭାବେ ବୁଝି ପାରିଥିଲେ । ଏହି ଅନୁଭୂତି ତାଙ୍କୁ ରାଜନୈତିକ ନେତା ହେବାପାଇଁ ଖୁବ୍ ସାହାଯ୍ୟ କରିଥିଲା । ସେ ଗରିବମାନଙ୍କର ଅଭାବ ଦୂର କରିବା ପାଇଁ ସରକାରଙ୍କଠାରେ ପ୍ରତିବାଦ ଜଣାଇଥିଲେ ।

## ଅସହଯୋଗ ଆନ୍ଦୋଳନ, ଜେଲ୍‌ଦଣ୍ଡ ଓ ପିତୃବିୟୋଗ

୧୯୧୯ ମସିହାରେ ଗାନ୍ଧୀଜୀ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିଥିଲେ । ସେ ଗରିବମାନଙ୍କର ଅଭାବ ଅସୁବିଧା ଦୂର କରିବାପାଇଁ ସରକାରଙ୍କଠାରେ ପ୍ରତିବାଦ ଜଣାଇଥିଲେ । ନେହେରୁ ଗାନ୍ଧୀଙ୍କର ପନ୍ଥାକୁ ପସନ୍ଦ କରି ଏପ୍ରିଲ ୬ ତାରିଖରେ ଭାରତବ୍ୟାପୀ ହରତାଳ ଆରମ୍ଭ କରିଥିଲେ ।

ତା ଫଳରେ ସେଇ ବର୍ଷ ଏପ୍ରିଲ୍ ୬ ତାରିଖରେ ଜାଲିଆନାୱାଲାବାଗ୍‌ଠାରେ ରକ୍ତାକ୍ତ ହତ୍ୟାକାଣ୍ଡର ସୂତ୍ରପାତ ହେଲା । ଏହି ଘଟଣାରେ ଜବାହର ଖୁବ୍ ବ୍ୟଥିତ ହୋଇ ଜାଲିଓ୍ୱାନାବାଗ୍ ହତ୍ୟାକାଣ୍ଡ ପରେ ବ୍ରିଟିଶ୍ ବିରୁଦ୍ଧରେ ଅବିଶ୍ରାନ୍ତ ଆନ୍ଦୋଳନ ଚଳାଇବା ଲାଗି ଦୃଢ଼ ପ୍ରତିଜ୍ଞ ହୋଇ ସେ ଦୋକାନ, ବଜାର ଓ ସ୍କୁଲ୍ କଲେଜ ଆଗରେ ଧର୍ମଘଟ କଲେ । ୧୯୨୧ ମସିହା ମାର୍ଚ୍ଚ ମାସଠାରୁ ନଭେମ୍ବର ମାସ ପର୍ଯ୍ୟନ୍ତ ପୋଲିସ୍ ତାଙ୍କୁ ଧରିପାରି ନ ଥିଲେ । କିନ୍ତୁ ଡିସେମ୍ବର ୬ ତାରିଖରେ ସେ ପ୍ରଥମଥର ପାଇଁ କାରାବରଣ କଲେ । ଏହି ସମୟରେ ମୋତିଲାଲ ନେହେରୁ ମଧ୍ୟ ଜାତୀୟ ଆନ୍ଦୋଳନରେ ଯୋଗ ଦେଲେ । ପ୍ରଥମେ ସେ ଥିଲେ ବିଳାତି ସଭ୍ୟତାର ଚରମ ପୃଷ୍ଠପୋଷକ ।

ଏକଦା ସେ ଉତ୍କୃଷ୍ଟ ଖାଦ୍ୟ ଓ ଉତ୍କୃଷ୍ଟ ଆଳାପର ଉପାସକ ଥିଲେ । କିନ୍ତୁ ଜାତିର ଆହ୍ୱାନ ତାଙ୍କୁ ବିବ୍ରତ କରି ଦେଇଥିଲା । ତେଣୁ ସେ ବିଦେଶୀ ଢଙ୍ଗ ଛାଡ଼ି ଦେଶୀ ଚଳଣୀ ଗ୍ରହଣ କରିଥିଲେ । ଯେଉଁ ପରିବାରରେ ସପ୍ତାହରେ ଛଅ ଦିନ ବିଦେଶୀ ଖାଦ୍ୟ ଓ ଦିନେ ମାତ୍ର ଦେଶୀ ଭୋଜନ ପ୍ରସ୍ତୁତ ହେଉଥିଲା, ସେଠାରେ ସମ୍ପୂର୍ଣ୍ଣ ବିପରୀତ ରୀତି ଅନୁସରଣ କରାଗଲା । କେବଳ ରବିବାର ବ୍ୟତୀତ ଅନ୍ୟ ସବୁଦିନ ଭାରତୀୟ ଭୋଜନ ପ୍ରସ୍ତୁତ ହେଲା । ବିଦେଶୀ ବସ୍ତ୍ର ପରିବର୍ତ୍ତେ ତାଙ୍କ ପରିବାରର ଲୋକେ ଖଦଡ଼ ବସ୍ତ୍ରକୁ ଆଦରି ନେଇଥିଲେ । ମୋତିଲାଲ ନେହେରୁ ସ୍ୱରାଜ ଦଳଗଠନ କରିଥିଲେ ଏବଂ କଂଗ୍ରେସର ସଭାପତି ମଧ୍ୟ ହୋଇଥିଲେ । ଏହାପରେ ସେ ଜାତୀୟ ଆନ୍ଦୋଳନରେ ଯୋଗଦେଇ ପରେ ଦୀର୍ଘକାଳ କାରାବରଣ କରିଥିଲେ ।

ନେହେରୁ ଜେଲରୁ ଖଲାସହୋଇ ଦେଖିଲେ ଯେ ଦେଶର ଅବସ୍ଥା ଅଧିକ ଶୋଚମୀୟ । ଲୋକମାନେ ବ୍ରିଟିଶ୍ ସରକାରଙ୍କ ଦ୍ୱାରା ଲାଞ୍ଛିତ ଓ ଅପମାନିତ ହେଉଛନ୍ତି । ସରକାରଙ୍କ ଦମନ ନୀତି ଅଧିକ ଦୃଢ଼ ଓ ନିର୍ମମ ହୋଇଛି । ହିନ୍ଦୁ-ମୁସଲମାନ ବିବାଦ ଦେଖାଦେଇଛି । ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ପାଇଁ ସେ ଆପ୍ରାଣ ଚେଷ୍ଟା କରିଥିଲେ । ଠିକ୍ ଏହି ସମୟରେ କମଳା ଦେବୀଙ୍କୁ ଯକ୍ଷ୍ମାରୋଗ ଆକ୍ରମଣ କଲା । ତାଙ୍କର ଅବସ୍ଥା ଦିନକୁ ଦିନ ଖରାପ ଆଡ଼କୁ ଗତି କରିବାରୁ ନେହେରୁ ଉଦାସ ହୋଇପଡ଼ିଲେ । ଡାକ୍ତର ଆନ୍ସାରୀଙ୍କ ପରାମର୍ଶରେ ତାଙ୍କ ପରିବାରବର୍ଗଙ୍କୁ ଧରି ମୋତିଲାଲ ୧୯୨୭ ମାର୍ଚ୍ଚ ମାସରେ ସ୍ୱିଜରଲାଣ୍ଡ ଯାତ୍ରା କଲେ । ଜବାହରଲାଲ ତାଙ୍କର ୟୁରୋପ ଭ୍ରମଣ ସମୟରେ ଫାନ୍ସ, ଇଂଲଣ୍ଡ, ବେଲ୍‌ଜିୟମ, ହଲାଣ୍ଡ, ଜର୍ମାନୀ ଓ ରୁଷିଆ ପରିଭ୍ରମଣ କରିଥିଲେ । ୧୯୨୭ ଫେବୃୟାରୀ ମାସରେ ବ୍ରାସେଲ୍‌ସ୍‌ଠାରେ ଅନୁଷ୍ଠିତ ହୋଇଥିବା ଅସାମ୍ରାଜ୍ୟ-ବାଦୀ କଂଗ୍ରେସରେ ଭାରତୀୟ କଂଗ୍ରେସର ପ୍ରତିନିଧିତ୍ୱ କରିଥିଲେ । ସେ ପିତାଙ୍କ ସହ ରୁଷିଆ ଗସ୍ତରେ ମସ୍କୋ ଯାଇଥିଲେ ଓ ରୁଷ୍ ରାଜନୀତି ଦ୍ୱାରା ଖୁବ୍ ପ୍ରଭାବିତ ହୋଇଥିଲେ ।

ସେ ବିଲାତରୁ ଫେରି ମାନ୍ଦ୍ରାଜରେ ପହଞ୍ଚିଲେ ଓ କଂଗ୍ରେସ ଅଧିବେଶନରେ ଯୋଗଦେଲେ । ସେ ଏହି ଅଧିବେଶନରେ ଅନେକ ପ୍ରସ୍ତାବ ଆଗତ କରିଥିଲେ ଓ ସେସବୁର ଲକ୍ଷ୍ୟ ଥିଲା ଜାତୀୟ ସ୍ୱାଧୀନତା ।

ମାନ୍ଦ୍ରାଜରୁ ଫେରି ନେହେରୁ ଦେଶସାରା ପର୍ଯ୍ୟଟନ କରି ଶହ ଶହ ସଭାରେ ଭାଷଣ ଦେଲେ । ଅନେକ ପ୍ରାଦେଶିକ ସମ୍ମିଳନୀରେ

ସଭାପତିତ୍ୱ ମଧ୍ୟ କରିଥିଲେ । ମାନବିକ ଅଧିକାର ଓ ବୈଷମ୍ୟ ଦୂରୀକରଣ ଉପରେ ସେ ଅଧିକ ଗୁରୁତ୍ୱ ଆରୋପ କରୁଥିଲେ । ତେଣୁ ଶ୍ରମିକ ସଂଘ ତାଙ୍କ ପକ୍ଷ ସମର୍ଥନ କରି ତାଙ୍କୁ ନିଖିଳ ଭାରତ ଶ୍ରମିକ ସଂଗଠନ କଂଗ୍ରେସର ସଭାପତି ରୂପେ ନିର୍ବାଚିତ କଲେ । ୧୯୨୯ରେ ଲାହୋର ଅଧିବେଶନଠାରେ ସେ ପିତାଙ୍କଠାରୁ କଂଗ୍ରେସ ସଭାପତି ଦାୟିତ୍ୱ ଗ୍ରହଣ କଲେ ।

୧୯୩୦ ମସିହା ମାର୍ଚ୍ଚ ମାସ ୨ ତାରିଖରେ ଗାନ୍ଧୀଙ୍କର ସାବରମତୀ ଆଶ୍ରମଠାରୁ ଦାଣ୍ଡୀ ପର୍ଯ୍ୟନ୍ତ ତାଙ୍କର ଦୁଇଶତ ପୃକାଶ ମାଇଲ ବ୍ୟାପୀ ଲବଣ ସତ୍ୟାଗ୍ରହ ଯାତ୍ରା ଆରମ୍ଭ କଲେ । ସେତେବେଳକୁ ନେହେରୁ ଜନସାଧାରଣଙ୍କ ମନରେ ଉଗ୍ର ଜାତୀୟ ଭାବ ଉଦ୍ଦୀପିତ କରି ସାରିଥିଲେ । ଲୋକଙ୍କ ସମ୍ମୁଖରେ ସ୍ୱତନ୍ତ୍ରାଧାରା ବ୍ୟକ୍ତ କରି ସେମାନଙ୍କ ମନରେ ଆନ୍ଦୋଳନ ବହ୍ନି ଜଳାଇ ଦେଇଥିଲେ । ଏପ୍ରିଲ୍ ୧୩ ତାରିଖରେ ଅନ୍ୟାନ୍ୟ ସହସ୍ର ମୁକ୍ତି-ସେନାଙ୍କ ସହ ସେ ବନ୍ଦୀ ହୋଇଥିଲେ । ଚଟ୍ଟଗ୍ରାମ, ପେଶାଓ୍ୱାର ଓ ଶୋଲାପୁର ଅଞ୍ଚଳରେ ରକ୍ତପାତ ଘଟିଲା । ଏହି ଘଟଣାଗୁଡ଼ିକ ଶୁଣି ନେହେରୁ ଅତିଶୟ ମର୍ମାହତ ହୋଇ ପଡ଼ିଥିଲେ ।

ସେ ବନ୍ଦୀ ହେବାର ମାସକ ପରେ ତାଙ୍କର ପିତା ମୋତିଲାଲ ନେହେରୁ ଛଅ ମାସ ପାଇଁ କାରାଦଣ୍ଡରେ ଦଣ୍ଡିତ ହୋଇ ନୈନି ଜେଲରେ ରହିଲେ । ପିତା ଓ ପୁତ୍ରଙ୍କୁ ଏକ ସ୍ଥାନରେ ରଖାଗଲା । ତେଣୁ ମୋତିଲାଲ ଖୁବ୍ ଆନନ୍ଦିତ ହୋଇଥିଲେ । ଜେଲ୍‌ରେ ଥିବାବେଳେ ନେହରୁ ଏକ ରୁଟିନ୍-ବନ୍ଧା ଜୀବନଯାପନ କରୁଥିଲେ । ରାତି ୩ଟାରୁ ଉଠି ସେ

ଯୋଗାସନ ଏକ ଘଣ୍ଟା ପାଇଁ କରୁଥିଲେ । ଚରଖାରେ ୩/୪ ଘଣ୍ଟା ସୂତା କାଟୁଥିଲେ । ଘରଦ୍ୱାର ନିଜେ ଓଳାଉ ଥିଲେ; ତାଙ୍କର ଓ ତାଙ୍କ ପିତାଙ୍କର ଲୁଗାପଟା ନିଜେ ସଫା କରୁଥିଲେ ଓ ବ୍ୟାୟାମ କରୁଥିଲେ । ଜେଲରେ ଥିବାବେଳେ ଲେଖାଲେଖି ଓ ପଢ଼ାପଢ଼ି କରିବାକୁ ତାଙ୍କୁ ଅଧିକ ସମୟ ମିଳୁଥିଲା । ଲେଖାଲେଖି ଓ ପଢ଼ାପଢ଼ିରେ ଆନନ୍ଦ ପାଉଥିଲେ । ତେଣୁ ସେ କହୁଥିଲେ- "ଜେଲ ମୋ ପାଇଁ ସ୍ୱର୍ଗ ।"

ତାଙ୍କ ପିତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହେବାରୁ ତାଙ୍କୁ ସେପ୍ଟେମ୍ବର ମାସ ୮ ତାରିଖରେ ମୁକ୍ତ କିଆଗଲା । ନେହେରୁ ପିତାଙ୍କ ପାଇଁ ଖୁବ୍ ବ୍ୟଥିତ ହୋଇ ପଡ଼ିଥିଲେ । ନେହେରୁଙ୍କ ଭଣେଇ ରଞ୍ଜିତ୍ ପଣ୍ଡିତ କରୁଦିନ ପାଇଁ ବନ୍ଦୀ ହୋଇ ସେଠାକୁ ଆସିଲେ । ଅକ୍ଟୋବର ୧୧ ତାରିଖରେ ନେହେରୁଙ୍କୁ ଜେଲରୁ ମୁକ୍ତ କିଆଗଲା । କିନ୍ତୁ ଜବାହର ପୁଣି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବାରୁ ତାଙ୍କୁ ୮ ଦିନ ପରେ ଦୁଇବର୍ଷ ପାଇଁ ସଶ୍ରମ କାରାଦଣ୍ଡ ଦିଆଗଲା । ବୃଦ୍ଧ ପିତା ମୋତିଲାଲ ଏହି ଦୁଃସମ୍ବାଦ ପାଇ ମର୍ମାହତ ହୋଇ ପଡ଼ିଥିଲେ । ଜେଲରେ ଥିବା ସମୟରେ ନେହେରୁ ପ୍ରିୟକନ୍ୟା ଇନ୍ଦିରାଙ୍କ ପାଖକୁ ମାନବ ସଭ୍ୟତାର କିବର୍ତ୍ତନ, ପୃଥିବୀ ଇତିହାସର କ୍ରମବିକାଶ, ମାନବଦର୍ଶନ ଇତ୍ୟାଦି ବିଷୟ ଉପରେ ଅନେକ ଚିଠି ଲେଖିଥିଲେ । ସେସବୁ ପରେ "Glimpses of World History" ରୂପ ନେଇ ଆତ୍ମପ୍ରକାଶ କରିଥିଲା ।

ମହାତ୍ମାଗାନ୍ଧୀ ଇଂରେଜମାନଙ୍କର ଲୁଣମରା ଆଇନ୍ ଲଙ୍ଘନ କରିଥିବାରୁ ମେ ମାସ ୫ ତାରିଖ ଦିନ ସକାଳେ ହେ

ତାଙ୍କ କୁଟୀରରେ ଶାନ୍ତିରେ ଶୋଇଥିବା ସମୟରେ ତାଙ୍କୁ ବନ୍ଦୀ କରାଗଲା । ଭାରତର ଅନେକ ନାରୀ ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ । ସେମାନେ ମଦ ଦୋକାନ, ଲୁଗା ଦୋକାନ ଆଗରେ ଧାରଣା ଦେଉଥିଲେ । ସେହି ମହିଳାଙ୍କ ମଧ୍ୟରେ ଥିଲେ ନେହେରୁଙ୍କ ସ୍ତ୍ରୀ କମଳା ନେହେରୁ, ତାଙ୍କର ଭଉଣୀ ବିଜୟଲକ୍ଷ୍ମୀ ପଣ୍ଡିତ ଓ ତାଙ୍କର ମାଆ ସ୍ୱରୂପରାଣୀ । ପ୍ରଥମେ ମୋତିଲାଲ, ତାଙ୍କ ପରିବାରବର୍ଗ ପୋଲିସ୍‌ମାନଙ୍କ ଦ୍ୱାରା ନିର୍ଯ୍ୟାତିତ ଓ ଲାଠି ପ୍ରହାର ଦ୍ୱାରା ଆଘାତ ହେବା ଖବର ପାଇ ଲଜ୍ଜାବୋଧ କରୁଥିଲେ; କିନ୍ତୁ ପରେ ସେମାନଙ୍କ କାର୍ଯ୍ୟକୁ ପସନ୍ଦ କରିଥିଲେ ଓ ଗର୍ବ ଅନୁଭବ କରିଥିଲେ । ନେହେରୁଙ୍କ ସ୍ତ୍ରୀ କମଳା ଦେବୀ ଅସୁସ୍ଥ ଥାଇ ଏହି ଆନ୍ଦୋଳନରେ ଭାଗ ନେଇ ଏପରି ବିଚକ୍ଷଣ କାମ କଲେ ଯେ ଅହ୍ଲାବାଦରେ ତାଙ୍କ କାମ ଦେଖି ସମସ୍ତେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ଦିନକୁ ଦିନ ସ୍ୱାଧୀନତା ଆନ୍ଦୋଳନରେ ଅଧିକ ସଂଖ୍ୟକ ଲୋକ ଯୋଗଦେଲେ ଓ ଶହ ଶହ ଲୋକ ସବୁଦିନେ ଜେଲ ଗଲେ । ମୋତିଲାଲ ଅସୁସ୍ଥ ଥିବାରୁ ଡାକ୍ତରଙ୍କ ପରାମର୍ଶରେ ତାଙ୍କୁ ମସୋରୀକୁ ଚିକିତ୍ସା ପାଇଁ ନିଆଗଲା । ତାଙ୍କ ସହିତ ଜବାହରଲାଲ, କମଳା ଦେବୀ, ବିଜୟଲକ୍ଷ୍ମୀ ପଣ୍ଡିତ ଓ ତାଙ୍କର ୩ଟି ଝିଅ ସେଠାକୁ ଯାଇଥିଲେ । ସେଠାରେ ତିନୋଟି ବଂଶର ମିଳନ ହୋଇଥିଲା । ଜବାହର ପିଲମାନଙ୍କ ସହିତ ଖେଳିବାକୁ ଖୁବ୍ ଭଲ ପାଉଥିଲେ । ସେ ପିଲମାନଙ୍କୁ ଗୋଟିଏ ଧାଡ଼ିରେ ଠିଆ କରାଇ ସବୁଠାରୁ ସାନ ପିଲାଟିକୁ ଆଗରେ ଠିଆ କରାଇ ତା' ହାତରେ ଗୋଟିଏ କାଗଜ ପତାକା ଧରାଇ "ଝଣ୍ଡା ଉଚା ରହେ ହାମାରା" ସ୍ଲୋଗାନ୍ ଦେଇ ପିଲାଙ୍କ ସହ ମାର୍ଚ୍ଚିଂ କରୁଥିଲେ । ମୃତ୍ୟୁପୂର୍ବରୁ ଏହି ଅଳ୍ପ କେତୋଟି

ଦିନ ମାତ୍ର ମୋତିଲାଲ ତାଙ୍କ ପରିବାରବର୍ଗଙ୍କ ସହ ଆନନ୍ଦରେ ଓ ଶାନ୍ତିରେ କଟାଇଥିଲେ ।

ଜବାହର ଓ ତାଙ୍କ ସ୍ତ୍ରୀ କମଳା ଦେବୀ କୃଷକ ସମ୍ମିଳନୀରେ ଯୋଗ ଦେବାପାଇଁ ଅକ୍ଟୋବର ୧୨ ତାରିଖରେ ବାହାରିଲେ । ସମ୍ମିଳନୀରେ କୌଣସି ଭାଷଣ ନ ଦେବାପାଇଁ ବାଟରେ ସେ ସରକାରଙ୍କଠାରୁ ଗୋଟିଏ ସରକାରୀ ଚିଠି ପାଇଥିଲେ, ମାତ୍ର ସେ ତାକୁ ଭ୍ରୂକ୍ଷେପ ନ କରି ସେଠାରେ ଭାଷଣ ଦେଇଥିଲେ । ତେଣୁ ତାଙ୍କୁ ପୁଣି ନୈନୀ ଜେଲକୁ ପଠାଇ ଦିଆଗଲା । ପିତା ମୋତିଲାଲ ଏ ଖବର ପାଇ ବ୍ୟଥିତ ହୋଇ ପଡ଼ିଥିଲେ ଓ ଉତ୍ତ୍ୟକ୍ତ ହୋଇ "ଜବାହର ଦିବସ" ପାଳନ କରିବାପାଇଁ ଲୋକଙ୍କୁ ଅହ୍ୱାନ ଦେଇଥିଲେ । ଲୋକମାନେ ଉତ୍ତ୍ୟକ୍ତ ହୋଇ "ଜବାହର ଦିବସ" ପାଳନ କଲେ ଓ ହଜାର ହଜାର ବ୍ୟକ୍ତି ସ୍ୱଇଚ୍ଛାରେ ବନ୍ଦୀ ହେଲେ ।

ନେହେରୁଙ୍କୁ ଦେଖିବାକୁ ମୋତିଲାଲ ନୈନୀ ଜେଲକୁ ଆସିଥିଲେ । ପିତାଙ୍କର ଭଗ୍ନସ୍ୱାସ୍ଥ୍ୟ ଦେଖି ଜବାହର ଖୁବ୍ ଦୁଃଖିତ ହୋଇ ପଡ଼ିଥିଲେ ଓ ଅତିଶୀଘ୍ର କଲିକତା ଯାଇ ଚିକିତ୍ସିତ ହେବାପାଇଁ ପରାମର୍ଶ ଦେଇଥିଲେ । ମୋତିଲାଲ, ନେହେରୁଙ୍କ କଥାରେ ରାଜି ହୋଇ କଲିକତା ଯାଇଥିଲେ । ୧୯୩୧ ମସିହାରେ କମଳା ଦେବୀ ବନ୍ଦୀ ହୋଇଥିଲେ । ସେ କହିଥିଲେ "ମୁଁ ମୋ ସ୍ୱାମୀଙ୍କ ପଥ ଅନୁସରଣ କରିପାରି ଥିବାରୁ ଗର୍ବ ଓ ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଛି ।" ୧୯୩୧ ମସିହାରେ ମୋତିଲାଲ ଅତିଶୟ ଅସୁସ୍ଥ ହୋଇ ପଡ଼ିବାରୁ ଜବାହରଙ୍କୁ ଜେଲରୁ ଛଡ଼ାଇଥିଲେ । ଜବାହର ପିତାଙ୍କ ବିଛଣା ନିକଟକୁ ଯାଇ

ତାଙ୍କର ଭଗ୍ନସ୍ୱାସ୍ଥ୍ୟ ଦେଖି ତାଙ୍କୁ କୁଣ୍ଠାଇ ପକାଇ ବାଧ୍ୟ ପକାଉଥିଲେ ।

## ମୋତିଲାଲଙ୍କ ମୃତ୍ୟୁ

୧୯୩୧ ମସିହା ଜାନୁୟାରୀ ୨୬ ତାରିଖରେ ମୋତିଲାଲଙ୍କ ସ୍ୱାସ୍ଥ୍ୟ ବିଷୟରେ ଆଲୋଚନା କରିବାକୁ ସୁଯୋଗ ଦେବାଲାଗି ଅନ୍ୟାନ୍ୟ ନେତାଙ୍କ ସହ ଜବାହରଙ୍କୁ ଜେଲରୁ ମୁକ୍ତ କରାଗଲା । ମୋତିଲାଲଙ୍କର ଏକ୍‌ସରେ ପାଇଁ ଲକ୍ଷ୍ନୌ ଯିବାକୁ ଡାକ୍ତରମାନେ ତାଙ୍କୁ ପରାମର୍ଶ ଦେଇଥିଲେ । ମାତ୍ର ମୋତିଲାଲ ଜାଣି ସାରିଥିଲେ ଯେ ମୃତ୍ୟୁ ତାଙ୍କର ଖୁବ୍ ନିକଟରେ । ତେଣୁ ସେ ତାଙ୍କର ବାସଭବନ "ଆନନ୍ଦ ଭବନ" ଛାଡ଼ି ଲକ୍ଷ୍ନୌ ଯିବାକୁ ଆଦୌ ଇଚ୍ଛା କରୁ ନ ଥିଲେ । ସେ କହୁଥିଲେ "ମୋତେ ମୋ ବାସଭବନରେ ଶାନ୍ତିରେ ମରିବାକୁ ଦିଅ ।" ମାତ୍ର ଗାନ୍ଧୀଙ୍କର ପରାମର୍ଶରେ ତାଙ୍କୁ ଫେବୃୟାରୀ ମାସ ୪ ତାରିଖରେ ଲକ୍ଷ୍ନୌ ନିଆଯାଇଥିଲା । ତା' ପରଦିନ ସନ୍ଧ୍ୟାବେଳକୁ ସେ ଅଧିକ ଅସୁସ୍ଥ ହୋଇ ପଡ଼ିଥିଲେ । ସାରା ରାତି ଅନିଦ୍ରା ରହି ଜବାହର ଓ ସ୍ୱରୁପାରାଣୀ ତାଙ୍କ ବିଛଣା ନିକଟରେ ବସିଥାଆନ୍ତି । ୬ ତାରିଖ ଦିନ ମୋତିଲାଲ ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଦେଇ ଇହଲୀଳା ସମ୍ବରଣ କଲେ । ସମଗ୍ର ଦେଶରେ ଶୋକର ଛାୟା ଖେଳିଗଲା । ତାଙ୍କୁ ତାଙ୍କର ବାସଭବନକୁ ନିଆଯାଇ ବିରାଟ ଶୋଭାଯାତ୍ରାରେ ଗଙ୍ଗାନଦୀ କୂଳରେ ତାଙ୍କର ଶବ ଦାହ କରାଗଲା । ନେହେରୁ ପିତାଙ୍କୁ ହରାଇ ଦୁଃଖାଭିଭୂତ ଓ ହତୋତ୍ସାହ ହୋଇ ପଡ଼ିଥିଲେ, କିନ୍ତୁ ଗାନ୍ଧୀ ତାଙ୍କୁ ଆଶ୍ୱାସନା ଦେଇଥିଲେ ।

## କମଳାଙ୍କ ପରଲୋକ

ସରକାରଙ୍କ ଆଦେଶ ଅମାନ୍ୟ କରି ଗୋଟିଏ ଶୋଭାଯାତ୍ରାରେ ଯାଇଥିବାରୁ ନେହେରୁଙ୍କ ମାଆଙ୍କ ଉପରେ ପୋଲିସ୍‌ର ଲାଠିମାଡ଼ ବାରମ୍ବାର ବର୍ଷିଥିଲା । ତାଙ୍କ ମୁଣ୍ଡରୁ ଅଜସ୍ର ରକ୍ତଧାର ବହିବାରେ ଲାଗିଥିଲା ଓ ତତ୍‌କ୍ଷଣାତ୍ ସେ ସେଠାରେ ସଂଜ୍ଞାହୀନା ହୋଇ ତଳେ ପଡ଼ିଯାଇଥିଲେ । ନେହେରୁ ଏହି ସମ୍ବାଦ ଖବରକାଗଜରୁ ପଢ଼ି ଅତି ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ । କିଛିଦିନ ପରେ ତାଙ୍କର ମାଆ ପୁଅକୁ ଦେଖା କରିବାକୁ ମୁଣ୍ଡରେ ବ୍ୟାଣ୍ଡେଜ୍ ବନ୍ଧା ହୋଇଥିବା ଅବସ୍ଥାରେ ଆସିଥିଲେ । ତାଙ୍କ ମାଆଙ୍କ ମନରେ ଏଥିପାଇଁ ତିଳେ ହେଲେ ଦୁଃଖ ନ ଥିଲା । ବରଂ ସେ ଦେଶପାଇଁ ତାଙ୍କ ରକ୍ତ ଦେଇ ପାରିଛନ୍ତି ବୋଲି ଗର୍ବ ଅନୁଭବ କରୁଥିଲେ ।

ନେହେରୁଙ୍କ ସ୍ୱାସ୍ଥ୍ୟ ଖରାପ ହେବାରୁ ତାଙ୍କୁ ହିମାଳୟ ପାଦଦେଶସ୍ଥିତ ଡେରାଡୁନ୍ ଜେଲକୁ ସ୍ଥାନାନ୍ତରିତ କରାଗଲା । ସେହି ଜେଲରେ ସେ ୧୪ ମାସ ୧୫ ଦିନ କଟାଇଥିଲେ । ଡେରାଡୁନ୍ ଜେଲରେ ଥିବା ସମୟରେ ତାଙ୍କ ମାଆ ଖୁବ୍ ଅସୁସ୍ଥ ଥିବାର ଓ ତାଙ୍କୁ ଡାକ୍ତରଖାନା ନିଆଯାଇ ଥିବାର ଖବର ସେ ପାଇଥିଲେ । ତାଙ୍କୁ ସଙ୍ଗେ ସଙ୍ଗେ ମୁକ୍ତ ଦିଆଯାଇଥିଲା ।

ନେହେରୁ ସ୍ତ୍ରୀ କମଳା ଦେବୀଙ୍କର ଚିକିତ୍ସା ପାଇଁ ଡାକ୍ତରଙ୍କ ପରାମର୍ଶରେ ୧୯୩୪ ମସିହା ଜାନୁୟାରୀ ୧୫ ତାରିଖରେ କଲିକତା ଯିବାପାଇଁ ସ୍ଥିର କରିଥିଲେ । ଠିକ ସେହିଦିନ ଦ୍ୱିପ୍ରହରରେ ବିହାରଠାରେ ଭୟାନକ ଭୂମିକମ୍ପ ହୋଇଥିଲା । ଏହି ଭୂମିକମ୍ପରେ ହଜାର ହଜାର ଲୋକ

ମୃତ୍ୟୁବରଣ କଲେ; ବହୁତ କୋଠାବାଡ଼ି ଓ ସମ୍ପତ୍ତି ନଷ୍ଟ ହୋଇଯାଇଥିଲା । ସେହିଦିନ ସନ୍ଧ୍ୟାବେଳେ ନେହେରୁ ତାଙ୍କ ସ୍ତ୍ରୀଙ୍କ ସହିତ କଲିକତା ଯାତ୍ରା କଲେ । କଲିକତା ଯାତ୍ରା ସମୟରେ ସେମାନେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଆଶ୍ରମ "ଶାନ୍ତି ନିକେତନ" ଭ୍ରମଣ କରିଥିଲେ ଓ ସେଠାର ଶାନ୍ତିପୂର୍ଣ୍ଣ ବାତାବରଣ ତାଙ୍କୁ ଖୁବ୍ ଭଲ ଲାଗିଲା ଓ ଇନ୍ଦିରାଙ୍କୁ ତାଙ୍କର ସ୍କୁଲ ପଢ଼ା ଶେଷ ପରେ ପଠାଇବେ ବୋଲି ରବୀନ୍ଦ୍ରନାଥଙ୍କ ସହିତ କଥାବାର୍ତ୍ତା କରିଥିଲେ ।

ନେହରୁ ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ କଲିକତାଠାରେ ଏକ ସଭାରେ ଭାଷଣ ଦେଇଥିବାରୁ ତାଙ୍କୁ ପୁଣି ଥରେ ଦୁଇବର୍ଷ ଲାଗି ଜେଲଦଣ୍ଡ ଭୋଗିଲେ । ଏଥରକୁ ମିଶାଇ ସେ ୭ମ ଥର ଜେଲଦଣ୍ଡ ଭୋଗିଲେ । କଲିକତାର ଅସ୍ୱାସ୍ଥ୍ୟକର ପରିବେଶରେ ତାଙ୍କର ସ୍ୱାସ୍ଥ୍ୟ ଭଗ୍ନ ହେବାରୁ ତାଙ୍କୁ ପୁନର୍ବାର ହିମାଳୟ ପାଦଦେଶସ୍ଥିତ ଡେରାଡୁନ୍ ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା । ସେଠାରେ ଶାନ୍ତ ପରିବେଶ ନେହେରୁଙ୍କୁ ଖୁବ୍ ଭଲ ଲାଗୁଥିଲା ଓ ସେଠାରେ ସେ କମଳା ନେହେରୁଙ୍କର ଖୁବ୍ ନିକଟତର ହୋଇ ପାରିଥିଲେ । ନେହେରୁ ୧୯୩୪ ମସିହା ଜୁନ୍ ମାସରେ ତାଙ୍କର "ଆତ୍ମଜୀବନୀ" ଲେଖା ଆରମ୍ଭ କରିଥିଲେ ଓ ୧୯୩୫ ମସିହା ଫେବୃୟାରି ମାସରେ ତାହା ଶେଷ କରିଥିଲେ ।

କମଳା ଦେବୀଙ୍କର ସ୍ୱାସ୍ଥ୍ୟ ବେଳକୁ ବେଳ ଖରାପ ଆଡକୁ ଗତି କରିବାରୁ ତାଙ୍କୁ ଜେଲରୁ ମୁକ୍ତ ଦିଆଗଲା ଓ ପୁଣି ୧୧ ଦିନ ପରେ ହଠାତ୍ ଜେଲକୁ ଯିବାକୁ ପଡ଼ିଲା । ଏଥର ତାଙ୍କୁ ନୈନି ଜେଲକୁ ପଠାଗଲା । କମଳା ଦେବୀଙ୍କର ସ୍ୱାସ୍ଥ୍ୟ ଆହୁରି ଖରାପ ହେବାରୁ ନେହେରୁଙ୍କୁ ନୈନି ଜେଲ୍‌ରୁ ଆଲ୍‌ମୋରା ଜେଲକୁ

ସ୍ଥାନାନ୍ତରିତ କରାଗଲା । ଠିକ୍ ସେହି ସମୟରେ ତାଙ୍କର ମାଆ ସ୍ୱରୂପରାଣୀ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହେବାରୁ ସେ ବମ୍ବେରେ ଚିକିତ୍ସିତ ହେଉଥିଲେ । କମଳା ଦେବୀଙ୍କ ସ୍ୱାସ୍ଥ୍ୟରେ ଅଧିକ ଅବନତି ଘଟିବାରୁ ଡାକ୍ତରଙ୍କ ପରାମର୍ଶରେ ତାଙ୍କୁ ୧୯୩୫ ମସିହା ମେ ମାସ ସକାଳେ ଇଉରୋପ ପଠାଯାଇଥିଲା । ନେହେରୁଙ୍କୁ ତାଙ୍କ ସହିତ ଯିବାପାଇଁ ଅନୁମତି ମିଳି ନ ଥିଲା । ପରେ କମଳାଙ୍କ ସ୍ୱାସ୍ଥ୍ୟ ଅତିଶୟ ସଙ୍କଟାପନ୍ନ ହେବାରୁ ୧୯୩୫ ମସିହା ସେପ୍ଟେମ୍ବର ମାସ ୪ଠା ତାରିଖରେ ତାଙ୍କୁ ଜେଲ୍‌ରୁ ମୁକ୍ତ ଦିଆଗଲା । ସେ ସେପ୍ଟେମ୍ବର ମାସ ୯ ତାରିଖରେ ଜର୍ମାନୀସ୍ଥିତ ବାଡେନ୍‌ୱେଲର୍‌ ଡାକ୍ତରଖାନାରେ କମଳା ଦେବୀଙ୍କ ନିକଟରେ ପହଞ୍ଚିଲେ । ସେ ସେଠାରେ ପହଞ୍ଚି କମଳା ଦେବୀଙ୍କୁ ଦେଖି ଖୁବ୍ ଦୁଃଖିତ ହୋଇଥିଲେ ଓ ଜାଣି ପାରିଥିଲେ ତାଙ୍କର ମୃତ୍ୟୁ ଖୁବ୍ ନିକଟରେ । ସେ ତାଙ୍କ ନିକଟରେ ବସି ନିଜେ ଲେଖିଥିବା "ଆତ୍ମଜୀବନୀ" ବାରମ୍ବାର ପଢ଼ୁଥିଲେ । ଫଳରେ ତାଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ଦେଖା ଦେଇଥିଲା । ୧୨ ଦିନ ଇଂଲଣ୍ଡରେ ରହିବା ପରେ ସୁଇଜରଲଣ୍ଡ ନିକଟସ୍ଥ ଲୁସାନାର ସାନାଟୋରିୟମ୍‌କୁ ତାଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା । କ୍ରମେ ତାଙ୍କର ସ୍ୱାସ୍ଥ୍ୟ ଅଧିକ ଖରାପ ଆଡ଼କୁ ଗତିକଲା । ୧୯୩୬ ମସିହା ଫେବୃୟାରି ମାସ ୨୮ ତାରିଖରେ କମଳାଙ୍କ ଜୀବନ-ଦୀପ ଚିରଦିନ ପାଇଁ ଲିଭିଗଲା । ସେହି ସମୟରେ ତାଙ୍କର ଝିଅ ଇନ୍ଦିରା ମଧ୍ୟ ତାଙ୍କ ନିକଟରେ ଥିଲେ । ନେହେରୁଙ୍କ ପରିବାରରୁ ତାଙ୍କର ପିତା ଓ ପରେ ପରେ ତାଙ୍କ ସ୍ତ୍ରୀ ତାଙ୍କୁ ଶୋକ ସାଗରରେ ଭସାଇ ଦେଇ ଚାଲିଯିବାରୁ ସେ ନିଃସଙ୍ଗବୋଧ କରୁଥିଲେ । କିଛିଦିନ ପରେ ସେ ତାଙ୍କର "ଆତ୍ମଜୀବନୀ" କମଳାଙ୍କୁ ଉତ୍ସର୍ଗ କରିଥିଲେ ।

## ନେହେରୁଙ୍କ ନିର୍ବାଚନ ପରିକ୍ରମା

ସ୍ତ୍ରୀଙ୍କ ମୃତ୍ୟୁ ପରେ ୧୯୩୬ ମସିହା ମାର୍ଚ୍ଚ ମାସରେ ନେହେରୁ ବିରସ ମନରେ ଭାରତକୁ ଫେରିଆସିଥିଲେ । ତାଙ୍କର ଅନୁପସ୍ଥିତି ସତ୍ତ୍ୱେ ସେ ଲକ୍ଷ୍ନୌ ଅଧିବେଶନ ପାଇଁ ସଭାପତି ମନୋନୀତ ହୋଇ ସାରିଥିଲେ । ସେ ଦେଶରେ ସମାଜବାଦ ପ୍ରତିଷ୍ଠା ପାଇଁ ଦୃଢ ପଣକରି ଥିଲେ । ଦକ୍ଷିଣପନ୍ଥୀମାନଙ୍କ ପ୍ରତିବାଦ ଯୋଗୁଁ ସେ ତିନଥର ଇସ୍ତଫା ଦେବାକୁ ବସିଲେ । ମାତ୍ର ଆନ୍ତର୍ଜାତିକ ପରିସ୍ଥିତି ଓ ଦେଶର ଐକ୍ୟକୁ ଦୃଷ୍ଟି ରଖି ସେ ତାହା କରି ନ ଥିଲେ । ସେ କାର୍ଯ୍ୟକାରୀ କମିଟିରୁ କେତେକ ଦକ୍ଷିଣପନ୍ଥୀଙ୍କୁ ବିଦାୟ ଦେଇ ତାଙ୍କ ବଦଳରେ ସମାଜବାଦୀଙ୍କୁ ନେଇଥିଲେ । ରାଜଗୋପାଳଚାରୀ, ପଟେଲ ଓ ରାଜେନ୍ଦ୍ର ପ୍ରସାଦ କଂଗ୍ରେସରୁ ଇସ୍ତଫା ଦେଇ ନେହେରୁଙ୍କ ମତ ବିରୁଦ୍ଧରେ ଆନ୍ଦୋଳନ ଚଳାଇଲେ । ନେହେରୁ ବିରୋଧୀ ସଭ୍ୟମାନଙ୍କର ଅପପ୍ରଚାର ଯୋଗୁଁ ଇସ୍ତଫା ଦେବାଲାଗି ସ୍ଥିର କରିଥିଲେ । ମାତ୍ର ଗାନ୍ଧୀଙ୍କ ପ୍ରଭାବ ବଳରେ ସେଥିରୁ କ୍ଷାନ୍ତ ହେଲେ । ପରେ ସେମାନେ ବୁଝିପାରିଲେ ଯେ ନେହେରୁ ହିଁ କଂଗ୍ରେସର ସଭାପତି ପଦ ପାଇଁ ଯୋଗ୍ୟ ବ୍ୟକ୍ତି ।

କଂଗ୍ରେସ ନିର୍ବାଚନ ପ୍ରଚାର ପାଇଁ ନେହେରୁ ଚାରିଆଡ଼େ ବୁଲି ବୁଲି ପ୍ରଚାର ଚଳାଇଲେ । ଏପ୍ରିଲ ୧୯୩୬ରୁ ଫେବୃୟାରୀ ମାସ ୧୯୩୭ ମସିହା ମଧ୍ୟରେ ସେ ତାଙ୍କର ୧୩୨ ଦିନିଆ ଗସ୍ତରେ ଅନ୍ତତଃ ୬୫,୦୦୦ ମାଇଲ ପରିକ୍ରମା କରିଥିଲେ । ତାଙ୍କର ଏହି ପରିକ୍ରମା ସମୟରେ ସେ ସମସ୍ତ ପ୍ରକାର ଯାନବାହାନ, ଯଥା— ରେଳଗାଡ଼ି, ଉଡ଼ାଜାହାଜ, ମଟର, ସାଇକେଲ, ନୌକା, ହାତୀ,

ଘୋଡ଼ା, ଓଟ ଏବଂ ଆବଶ୍ୟକ ସ୍ଥଳେ ପଦବ୍ରଜରେ ମଧ୍ୟ ସମଗ୍ର ଦେଶ ଭ୍ରମଣ କରି ସେଠାରେ ଭାଷଣ ଦେଇ ଲକ୍ଷ ଲକ୍ଷ ଲୋକଙ୍କୁ ଜାତୀୟ ଭାବରେ ଅନୁପ୍ରାଣିତ କରିପାରିଥିଲେ ଓ ଅଭୂତପୂର୍ବ ଲୋକପ୍ରିୟତା ଅର୍ଜନ କଲେ । କଂଗ୍ରେସର ଅପୂର୍ବ ବିଜୟ ହେଲା । ୧୧୬୧ ସ୍ଥାନରୁ ୭୧୧ଟି ସ୍ଥାନରେ କଂଗ୍ରେସ ସଫଳ ହେଲା । ଏହାର ମୂଳରେ ଥିଲା ନେହେରୁଙ୍କର ଅଦମ୍ୟ ଉତ୍ସାହ, ସମଗ୍ର ଦେଶ ପର୍ଯ୍ୟଟନ ଓ ଅନର୍ଗଳ ଭାଷଣ ।

## ମାତୃବିୟୋଗ ଓ ବିଦେଶ ଭ୍ରମଣ

ମୁସ୍‌ଲିମ୍ ଲିଗ୍ ଦଳ ପ୍ରଖର ସାମ୍ପ୍ରଦାୟିକ ଭାବଧାରାରେ ହିନ୍ଦୁମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଲା । ଯେତେବେଳେ ଉତ୍ତର ପ୍ରଦେଶରେ ଜିନ୍ନା କଂଗ୍ରେସ ଦଳ ସହିତ ସମ୍ପର୍କ ସ୍ଥାପନ କରିବା ଲାଗି ଉଦ୍ୟମ କଲେ, ନେହେରୁ ତାହା ପ୍ରତ୍ୟାଖ୍ୟାନ କରିଥିଲେ । ସେ ମୁସଲିମ୍ ଲିଗ୍ ସହିତ ସମ୍ପର୍କ ରଖିବାକୁ ଚାହୁଁ ନ ଥିଲେ । ନେହେରୁ କହୁଥିଲେ ଭାରତରେ ଅଛି ମାତ୍ର ଦୁଇଟି ଦଳ—ବ୍ରିଟିଶ ଓ କଂଗ୍ରେସ । କିନ୍ତୁ ଜିନ୍ନା କହିଲେ ନା, ଭାରତରେ ଅଛି ଆଉ ଗୋଟିଏ ତୃତୀୟ ଦଳ, ତାହା ହେଉଛି ମୁସ୍‌ଲିମ୍ ଲିଗ୍ । ସେ ନେହେରୁଙ୍କ ନୀତି ବିରୁଦ୍ଧରେ ଅପପ୍ରଚାର ଚଳାଇଥିଲେ । ସେ ବିଭିନ୍ନ ସ୍ଥାନ ଭ୍ରମଣ କରି ଉତ୍ତେଜନା ପୂର୍ଣ୍ଣ ଭାଷଣ ଦେଇ ମୁସଲମାନମାନଙ୍କୁ ଜାଗ୍ରତ କରାଇଲେ । ମୁସଲମାନ ସମ୍ପ୍ରଦାୟ ତାଙ୍କୁ ସମର୍ଥନ ଜଣାଇଲେ । ୧୯୩୮ ମସିହାରେ ନେହେରୁ ଜିନ୍ନାଙ୍କ ସହିତ ସାକ୍ଷାତ କରିବାକୁ ଚେଷ୍ଟା କରି ବିଫଳ ହେଲେ । କାରଣ ମୁସଲମାନ ଲିଗ୍‌ର ଲକ୍ଷ୍ୟଥିଲା ନେହେରୁ ନୀତିର କୁତ୍ସାରଟନା ଓ ହିନ୍ଦୁଙ୍କର ନିନ୍ଦାଗାନ । ନେହେରୁ ଜିନ୍ନାଙ୍କର ଏପରି ମନୋଭାବ

ଦେଖି କଂଗ୍ରେସର ସୁରକ୍ଷା ପାଇଁ କିସାନ୍ ସଙ୍ଘ ଓ ଶ୍ରମିକ ସଙ୍ଘ ସଙ୍ଗେ ସମ୍ବନ୍ଧ ରଖିଲେ । ସେ ଲୋକମାନଙ୍କୁ ବୁଝାଇଥିଲେ ଯେ କଂଗ୍ରେସ ଚିରସ୍ଥାୟୀ ଓ ଯେପର୍ଯ୍ୟନ୍ତ ଭାରତ ସ୍ୱାଧୀନ ନ ହୋଇଛି ସେପର୍ଯ୍ୟନ୍ତ ତାହା ବିଦେଶୀ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ ଚଳାଇବ ।

୧୯୩୮ ମସିହାରେ ନେହେରୁଙ୍କ ମାତା ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ଆହ୍ଲାବାଦ ଡାକ୍ତରଖାନାରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ୭ ବର୍ଷ ତଳେ ତାଙ୍କର ପିତା ଓ ଦୁଇବର୍ଷ ତଳେ ତାଙ୍କର ସ୍ତ୍ରୀ ତାଙ୍କୁ ଛାଡ଼ି ଇହଲୀଳା ସମ୍ବରଣ କରିଥିଲେ । ଜଣକ ପରେ ଜଣେ ତାଙ୍କର ପରିବାରବର୍ଗ ତାଙ୍କଠାରୁ ଦୂରେଇ ଗଲେ । ତେଣୁ ନେହେରୁଙ୍କ ମନରେ ନୈରାଶ୍ୟର ଛାୟା ଦେଖାଯାଇଥିଲା । ଏହି ସମୟରେ ସନ୍ତ୍ରାସବାଦୀ ଇଟାଲି ଓ ଜାତୀୟ ସମାଜବାଦୀ ଜର୍ମାନୀର ବିପ୍ଳବାତ୍ମକ ସମ୍ବାଦ ଶୁଣି ସେ ଅଧିକ ବ୍ୟଥିତ ହୋଇ ପଡ଼ିଥିଲେ । ମନ ପରିବର୍ତ୍ତନ ପାଇଁ ସେ ୧୯୩୮ ମସିହାରେ ଲଣ୍ଡନ, ପ୍ୟାରିସ ଓ ଜେନେଭା ଭ୍ରମଣରେ ବାହାରିଲେ । ସେ ବିଦେଶ ଗସ୍ତ ସମୟରେ ବିଭିନ୍ନ ସ୍ଥାନରେ ଭାଷଣ ଦେଇ ବ୍ରିଟିଶ୍ ସାମ୍ରାଜ୍ୟବାଦର ନିନ୍ଦାଗାନ କରିଥିଲେ । ଦୀର୍ଘ ସାତମାସ ପରେ ସେ ଭାରତ ଫେରିଆସି ଦେଖିଲେ ଯେ ସୁଭାଷଚନ୍ଦ୍ର ବୋଷ କଂଗ୍ରେସର ନେତୃତ୍ୱରେ ରହି ଗାନ୍ଧୀବାଦୀ-ମାନଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇଛନ୍ତି । ସେ ଗାନ୍ଧୀ ଓ ସୁଭାଷଙ୍କ ମଧ୍ୟରେ ଆନ୍ତରିକତା ଆଣିବା ପାଇଁ ଚେଷ୍ଟାକରି ବିଫଳ ହେଲେ । ଗାନ୍ଧୀ କଂଗ୍ରେସର ନେତୃତ୍ୱ ନେବାପାଇଁ ନେହେରୁଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ନେହେରୁ କାର୍ଯ୍ୟତଃ କଂଗ୍ରେସରୁ ଇସ୍ତଫା ଦେଇଥିଲେ । ସେ ୧୯୩୯ ମସିହାରେ ଚୀନ

ପରିଭ୍ରମଣରେ ଗଲେ ଓ ଚୀନକୁ ଭାରତର ସାହାଯ୍ୟ କରିବ ବୋଲି ଜଣାଇଥିଲେ । ୧୯୩୯ ମସିହା ସେପ୍ଟେମ୍ବର ପହିଲାରେ ହିଟ୍‌ଲର ପୋଲାଣ୍ଡ ଆକ୍ରମଣ କରିଥିଲେ । ଏହା ଫଳରେ ଦ୍ୱିତୀୟ ପୃଥିବୀ ମହାସମରର ସୂତ୍ରପାତ ହେଲା । ତେଣୁ ନେହେରୁ ଭାରତ ଫେରିଆସିଥିଲେ । ନେହେରୁ ଘୋଷଣା କଲେ ଯେ ଭାରତ ବ୍ରିଟିଶ ପକ୍ଷ ସମର୍ଥନ କରିବା ପୂର୍ବରୁ ଭାରତକୁ ସ୍ୱାଧୀନତା ଅର୍ପଣ କରାଯିବା ଉଚିତ୍ । ନେହେରୁଙ୍କର ଏହି ଦାବୀକୁ ବ୍ରିଟିଶ ସରକାର ଗ୍ରହଣ କଲେ ନାହିଁ । କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଲା ଓ ମୁସଲିମ୍ ଲିଗ୍ କଂଗ୍ରେସ ମତଦ୍ୱୈଧ ଭୀଷଣ ଆକାର ଧାରଣ କଲା । ଗାନ୍ଧୀ ୧୯୪୦ ମସିହାରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ପ୍ରଥମ ସତ୍ୟାଗ୍ରହୀ ହେଲେ ଆଚାର୍ଯ୍ୟ ବିନୋବା, ଦ୍ୱିତୀୟ ପଣ୍ଡିତ ନେହେରୁ । ସରକାର ସତ୍ୟାଗ୍ରହୀମାନଙ୍କୁ ବନ୍ଦୀ କଲେ । ନେହେରୁଙ୍କୁ ୪ବର୍ଷ ପାଇଁ ସଶ୍ରମ କାରାଦଣ୍ଡାଦେଶ ହେଲା । ଏହି ସମ୍ବାଦ ପାଇ ସମସ୍ତେ ସ୍ତମ୍ଭୀଭୂତ ହୋଇ ପଡ଼ିଲେ । ମାତ୍ର ୧୯୪୧ ମସିହା ଡ଼ିସେମ୍ବର ୪ ତାରିଖରେ ଜାପାନ ଯେତେବେଳେ ପେର୍ଲହାର୍ବରର ଆକ୍ରମଣ କଲା ସେତେବେଳେ ଅନ୍ୟାନ୍ୟ ନେତାଙ୍କ ସହ ନେହେରୁଙ୍କୁ ଖଲାସ କରାଗଲା ।

ହଙ୍ଗକଙ୍ଗ, ଫିଲିପାଇନସ, ମାଲୟ, ସିଙ୍ଗାପୁର ଥାଇଲାଣ୍ଡ ଓ ବର୍ମା ଏହିପରି ଗୋଟିଏ ପରେ ଗୋଟିଏ ରାଜ୍ୟ ସଫଳତାର ସହିତ ଜୟ କରି ଜାପାନ ଭାରତର ଦ୍ୱାର ଦେଶରେ ପହଞ୍ଚିଲା । ବର୍ମାରୁ ବହୁତ ଶରଣାର୍ଥୀ ଭାରତ ମଧ୍ୟକୁ ଚାଲିଆସିଲେ । ଏହି ସମୟରେ ଚୀନର ମାର୍ଶାଲ ଚିଆଙ୍ଗ କେଇ ଶେକ୍ ଓ ତାଙ୍କର ସ୍ତ୍ରୀ ଭାରତ ପରିଦର୍ଶନରେ ଆସିଥିଲେ ଏବଂ କଂଗ୍ରେସ ବ୍ରିଟିଶ ସପକ୍ଷରେ ଲଢ଼ିବା ପାଇଁ କଂଗ୍ରେସ ସହିତ ଯୁକ୍ତି କରିଥିଲେ ।

ବ୍ରିଟେନର ତତ୍କାଳୀନ ପ୍ରଧାନମନ୍ତ୍ରୀ ସାର୍ ଷ୍ଟାଫର୍ଡ଼ କ୍ରିପସଙ୍କୁ ପ୍ରତିନିଧି ରୂପେ ଭାରତକୁ ପଠାଇ ବ୍ରିଟିଶ ପକ୍ଷ ସମର୍ଥନ କରିବା ପାଇଁ ଓ ଭାରତୀୟମାନଙ୍କୁ ବୁଝାଇବାକୁ ପଠାଇଥିଲେ । କାରଣ କ୍ରିପସ ୧୯୩୯ ମସିହାରେ ଭାରତରେ ଥିଲେ ଓ ତାଙ୍କର ଭାରତୀୟ କଂଗ୍ରେସ ସହିତ ଖୁବ୍ ଭଲ ସମ୍ପର୍କ ଥିଲା । ସେ ଭାରତୀୟମାନଙ୍କ ଦ୍ୱାରା ଖୁବ୍ ଆଦୃତ ଓ ସମ୍ମାନିତ ହୋଇଥିଲେ । କ୍ରିପସ୍ କହିଲେ, ଯଦି ଭାରତ ସ୍ୱାଧୀନତା ପାଏ ତେବେ ତାର ସମସ୍ତ ପ୍ରକୃତ ଦାୟିତ୍ୱ ବ୍ରିଟିଶ୍ ସରକାରଙ୍କ ହାତରେ ରହିବ । ମାତ୍ର କଂଗ୍ରେସ ଏଥିରେ ରାଜି ହେଲନାହିଁ । ତେଣୁ କ୍ରିପସଙ୍କର ପ୍ରଚେଷ୍ଟା ନିଷ୍ଫଳ ହେଲା । ମୁସ୍‌ଲିମ୍ ଲିଗ୍ ମଧ୍ୟ ତାଙ୍କର ପ୍ରସ୍ତାବକୁ ଖଣ୍ଡନ କରିଥିଲା । ୧୯୪୨ ମସିହା ଅଗଷ୍ଟ ମାସ ୮ ତାରିଖରେ ଗାନ୍ଧିଜୀ "ଭାରତଛାଡ଼" ସ୍ଲୋଗାନ ଦେଇ ନିର୍ଭିକ ଭାବରେ ଜଣାଇ ଦେଲେ ଯେ ବ୍ରିଟିଶ ସରକାର ଭାରତକୁ ସ୍ୱାଧୀନତା ଦେବାପରେ ହିଁ ଭାରତ ଜାପାନ ବିରୁଦ୍ଧରେ ଯୁଦ୍ଧ କରିବ । "ଭାରତଛାଡ଼" ପ୍ରସ୍ତାବ ଗୃହୀତ ହେବାପରେ ୧୯୪୨ ମସିହା ଅଗଷ୍ଟ ୯ ତାରିଖ ସକାଳେ ମହାତ୍ମାଗାନ୍ଧୀଙ୍କୁ ବନ୍ଦୀ କରାଗଲା । ପରେ ପରେ ନେହେରୁ ତାଙ୍କ ସାନ ଭଉଣୀ କୃଷ୍ଣାଙ୍କ ପାଖରେ ଥିବା ସମୟରେ ପୋଲିସ୍ ତାଙ୍କୁ ମଧ୍ୟ ବନ୍ଦୀ କରିଥିଲା । ନେହେରୁଙ୍କ ପରେ ଅନେକ କଂଗ୍ରେସ ନେତାଙ୍କୁ ମଧ୍ୟ ପୋଲିସ ବନ୍ଦୀ କଲା । ୧୯୪୫ ମସିହା ଜୁନ୍ ୧୫ ତାରିଖ ପର୍ଯ୍ୟନ୍ତ ନେହେରୁଙ୍କୁ ବନ୍ଦୀ କରାଯାଇଥିଲା । ଏହା ଥିଲା ତାଙ୍କ ଜୀବନର ଦୀର୍ଘତମ ଓ ଶେଷ କାରାଦଣ୍ଡ ।

ମହାତ୍ମାଗାନ୍ଧୀ ଓ ସରୋଜିନୀ ନାଇଡୁଙ୍କୁ ପୁନାସ୍ଥିତ ଆଗାଖାଁ ପ୍ରାସାଦକୁ ବନ୍ଦୀକରି ନିଆଗଲା । ନେହେରୁ ଓ ତାଂକର ୧୧ ଜଣ କଂଗ୍ରେସ ନେତାଙ୍କୁ ବମ୍ବେଠାରୁ ଦୁଇଶହ ମାଇଲ ଦୂରରେ ଥିବା

ଅହମଦାବାଦ ଦୁର୍ଗରେ ବନ୍ଦୀ କରାଗଲା । ବନ୍ଦୀଶାଳାରେ ଥିବା ସମୟରେ ନେହେରୁ ତାଙ୍କର ଧରାବନ୍ଧା ରୁଟିନ୍ ଜୀବନ ଆରମ୍ଭ କରି ଦେଇଥିଲେ ଓ ଅଧିକାଂଶ ସମୟ ଲେଖାଲେଖିରେ କଟାଇ ଦେଇଥିଲେ । ବନ୍ଦୀ ଜୀବନର ସୀମିତ ପରିସର ମଧ୍ୟରେ ୧୯୪୪ ମସିହା ଏପ୍ରିଲ୍ ୧୩ ତାରିଖରେ ତାଙ୍କର ଶ୍ରେଷ୍ଠ ଗ୍ରନ୍ଥ "ଭାରତ ଆବିଷ୍କାର" ରଚନା ଆରମ୍ଭ କରିଥିଲେ ଓ ପାଞ୍ଚ ମାସ ମଧ୍ୟରେ ତାହା ଶେଷ କରି ଦେଇଥିଲେ ।

ଜେଲରେ ଥିବାବେଳେ ୩ ସପ୍ତାହ ପର୍ଯ୍ୟନ୍ତ ତାଙ୍କୁ କୌଣସି ଖବର କାଗଜ ପଢ଼ିବାକୁ ଦିଆଗଲା ନାହିଁ କିନ୍ତୁ ପରେ ନିଷେଧାଜ୍ଞା ଉଠାଇ ନିଆଯାଇଥିଲା । ଏହା ପରେ ଭାରତର ଓ ବିଦେଶର ବିଭିନ୍ନ ପତ୍ର ପତ୍ରିକା ଓ ନୂଆ ନୂଆ ବହି ନେହେରୁ ପଢ଼ିବାକୁ ପାଇ ପାରିଥିଲେ । ଏହା ଫଳରେ ବନ୍ଦୀଶାଳାର ପାଚେରି ଘେରା ମଧ୍ୟରେ ରହି ମଧ୍ୟ ସେ ଦେଶ ବିଦେଶର ସମସ୍ତ ଖବର ଜାଣି ପାରୁଥିଲେ, ତେଣୁ ସେ ବନ୍ଦୀଶାଳାରେ ଥିବାଭଳି ଅନୁଭବ କରିପାରି ନ ଥିଲେ ।

କଂଗ୍ରେସ ନେତାମାନଙ୍କୁ ବ୍ରିଟିଶ ସରକାର ବନ୍ଦୀ କରିବାରୁ ତାର ପ୍ରତିକ୍ରିୟା ସ୍ୱରୂପ ସାରା ଦେଶରେ କ୍ଷୋଧାଗ୍ନି ଜଳି ଉଠିଲା ଓ ଆନ୍ଦୋଳନ ଅଧିକରୁ ଅଧିକତର ହେଲା । ସରକାର ଭାବିଥିଲେ ନେତାମାନଙ୍କୁ ବନ୍ଦୀ କରିଦେଲେ ଦେଶରେ ଶୃଙ୍ଖଳା ଓ ଶାନ୍ତି ବିରାଜମାନ କରିବ କିନ୍ତୁ ତା ପରିବର୍ତ୍ତେ ବିଶୃଙ୍ଖଳା, ଅଶାନ୍ତି ଓ ହିଂସାକାଣ୍ଡ ଦିନକୁ ଦିନ ବଢ଼ିବାକୁ ଲାଗିଲା । ଛାତ୍ର ଓ ଶ୍ରମିକ ଅଧିକ ସଂଖ୍ୟାରେ ଆନ୍ଦୋଳନରେ ଯୋଗଦେଲେ । ସେମାନେ ଶାନ୍ତିପୂର୍ଣ୍ଣ ସଭା ଓ ହରତାଳ ଆରମ୍ଭ କଲେ ମଧ୍ୟ ପୋଲିସ୍ ପକ୍ଷରୁ ଲୁହବୁହା ଗ୍ୟାସ ଓ ଲାଠିଚାଳନା ପ୍ରୟୋଗ

କରାଗଲା । ୧୯୪୨ ମସିହା ଅଗଷ୍ଟ ମାସରୁ ଡ଼ିସେମ୍ବର ମାସ ମଧ୍ୟରେ ସରକାରଙ୍କ ପକ୍ଷରୁ ୫୩୮ ଥର ଗୁଳିଚାଳନା କରାଯାଇ-ଥିଲା । ୯୪୦ ଲୋକ ମରିଥିଲେ । ୧୬୩୦ ଲୋକ କ୍ଷତବିକ୍ଷତ ହୋଇଥିଲେ । ୧୯୪୨ ମସିହା ଶେଷ ବେଳକୁ ୬୦ ହଜାର ଲୋକ ବନ୍ଦୀ ହୋଇଥିଲେ । ବହୁତ ରେଳୱେ ଷ୍ଟେସନ ନଷ୍ଟ ହୋଇଥିଲା ଓ ଟେଲିଗ୍ରାଫ ଲାଇନ୍ କାଟି ଦିଆଯାଇଥିଲା । କେବଳ ଭାରତର ସ୍ୱାଧୀନତା ଆଣିବା ପାଇଁ ଭାରତୀୟମାନେ ଏହିସବୁ କାଣ୍ଡ ଘଟାଇଥିଲେ । ଯେଉଁ ଅଞ୍ଚଳରେ ଏହିସବୁ କାଣ୍ଡ ଘଟୁଥିଲା ସେହି ଅଞ୍ଚଳର ଲୋକଙ୍କଠାରୁ ଜୋରିମାନା ଆଦାୟ କରାଯାଉଥିଲା ଓ ଶାରୀରିକ ଦଣ୍ଡ ଦିଆଯାଉଥିଲା ।

୧୯୪୩ ମସିହାରେ ବଙ୍ଗଳାଦେଶରେ ଦୁର୍ଭିକ୍ଷ ପଡ଼ିଲା ଓ ସରକାର ସେହି ଅଞ୍ଚଳକୁ ଖାଦ୍ୟ ଯୋଗାଇବା ପାଇଁ ଅକ୍ଷମ ହେଲେ । ଫଳରେ ତିନି ଅୟୁତ ପାଞ୍ଚ ହଜାର ଲୋକ ମଲେ । ଏହା ଫଳରେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଭାରତୀୟମାନଙ୍କ ମନରେ କ୍ରୋଧାଗ୍ନି ଜଳିବାକୁ ଲାଗିଲା ।

ବ୍ରିଟିଶ ସରକାର ପକ୍ଷରୁ ବିଜୟ ନ ହେବାରୁ ତତ୍କାଳୀନ ଭାରତୀୟ ବଡ଼ଲାଟ୍ ଲର୍ଡ ୱାଭେଲ ଜୁନ୍ ୧୫ ତାରିଖ ୧୯୪୫ ମସିହାରେ ନେହେରୁ ଓ ଅନ୍ୟାନ୍ୟ କଂଗ୍ରେସ ନେତାମାନଙ୍କୁ କାରାମୁକ୍ତ କରିଥିଲେ ଓ ଜୁନ୍ ୨୫ ତାରିଖରେ ସିମଳା ବୈଠକରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କଲେ । ନେହେରୁ ଉକ୍ତ ବୈଠକରେ ଯୋଗଦେଲେ ମାତ୍ର ସେ ଜାଣିଥିଲେ ଯେ ଲିଗ୍ ନିଶ୍ଚୟ ପ୍ରତିବନ୍ଧକ ସୃଷ୍ଟି କରିବ । ପ୍ରକୃତରେ ବୈଠକର ପରିଣତି ଫଳପ୍ରଦ ହୋଇ ନ ଥିଲା । ଏହି ୧୫ ଦିନ ସମୟ ମଧ୍ୟରେ ନେହେରୁ କାଶ୍ମୀରର ଦୃଶ୍ୟ ଉପଭୋଗ କରିଥିଲେ ।

୧୯୪୬ ମସିହା ଫେବୃୟାରୀ ମାସରେ ବମ୍ବେରେ ନୌବାହିନୀ ବିଦ୍ରୋହ ଦେଖା ଦେଲା । କେତେକ ବ୍ରିଟିଶ୍ ଅଫିସର ଓ ନାବିକଙ୍କ ଉପରେ ଆକ୍ରମଣ କରାଯାଇଥିଲା । ଫଳରେ ବିଦ୍ରୋହର ନିଆଁ ହେଲକ୍ଲୁବେଲ ଜାହାଜକୁ ଆରମ୍ଭ କଲା । ଭାରତର ଅନ୍ୟାନ୍ୟ ନୌକେନ୍ଦ୍ର ଯଥା କରାଚୀ, କଲିକତା, ମାନ୍ଦ୍ରାଜ ଉପରେ ଏହାର ପ୍ରଭାବ ପଡ଼ିଲା । ନେହେରୁ ବମ୍ବେଠାରେ ଉପସ୍ଥିତ ହୋଇ ଏକ ବିରାଟ ସଭାରେ ଲୋକଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ ଯେ ଭାରତ ଅଳ୍ପଦିନ ମଧ୍ୟରେ ତାର ସ୍ୱାଧୀନତା ନିଶ୍ଚିତ ଭାବେ ହାସଲ କରିବ ମାତ୍ର ଏଥିପାଇଁ ଶୃଙ୍ଖଳା ନିତାନ୍ତ ଆବଶ୍ୟକ । ଏହାପରେ ବମ୍ବେରେ ସମସ୍ତ ଗଣ୍ଡଗୋଳ ବନ୍ଦ ହୋଇ ଯାଇଥିଲା ।

୧୯୪୬ ମସିହା ମେ ମାସ ୯ ତାରିଖରେ ନେହେରୁ ୪ର୍ଥ ଥର ପାଇଁ କଂଗ୍ରେସ ସଭାପତି ନିର୍ବାଚିତ ହେଲେ । ପୂର୍ବ ବଙ୍ଗଳାରେ ହିନ୍ଦୁମାନଙ୍କ ଉପରେ ମୁସଲମାନମାନେ ଅତ୍ୟାଚାର ଆରମ୍ଭ କରିଥିଲେ । ନେହେରୁ ଜିନ୍ନାଙ୍କ ସହ ଯାହାସବୁ ଆଲୋଚନା କଲେ ତାହା ସବୁ ବିଫଳ ହେଲା । ଓ୍ୱେଭେଲଙ୍କ ପ୍ରସ୍ତାବ କ୍ରମେ ନେହେରୁ ଅନ୍ତରିମ୍ ସରକାର ଗଢ଼ିବା ପାଇଁ ରାଜି ହେଲେ । ଦେଶରେ ହିନ୍ଦୁ-ମୁସଲମାନ ବିବାଦର ବିରତି ହେଲା ନାହିଁ । ନେହେରୁ ଓ ଜିନ୍ନା ଅନ୍ୟାନ୍ୟ ତିନିଜଣ ନେତାଙ୍କ ସହ ଲଣ୍ଡନ ଗଲେ । ସେଠାରେ ମଧ୍ୟ ସେମାନଙ୍କ ଆଲୋଚନା ନିଷ୍ଫଳ ହେଲା । ୧୯୪୬ ମସିହା ଡ଼ିସେମ୍ବର ୯ ତାରିଖରେ ସମ୍ବିଧାନ ପ୍ରଣୟନ ସଭା ବସିଲା କିନ୍ତୁ ଲିଗ୍ ସେଥିରେ ଯୋଗ ଦେଲା ନାହିଁ । ଦେଶରେ ପୁଣି ସାମ୍ପ୍ରଦାୟିକ ଗଣ୍ଡଗୋଳ ଆରମ୍ଭ ହେଲା । ଲାହୋର, ଅମୃତସର, ରାଓଲପିଣ୍ଡି, ଜଲନ୍ଧର ପ୍ରଭୃତି ସ୍ଥାନରେ ରକ୍ତପାତ ଘଟିଲା । ନେହେରୁ ଏହିସବୁ ଅଞ୍ଚଳ ପରିଦର୍ଶନ କରି ଅତିଶୟ ମର୍ମାହତ

ହୋଇ ପଡ଼ିଲେ । ୧୯୪୭ ମସିହା ମାର୍ଚ୍ଚ ମାସ ୨୩ ତାରିଖରେ ସେ ଏସୀୟ ସବଭାରତ ସମ୍ମିଳନୀ ଡକାଇଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଭାରତ ଏସିଆର ଏକ ମୁଖ୍ୟ ଦେଶ ଓ ତାର ସମସ୍ୟା-ଗୁଡ଼ିକ ଆନ୍ତର୍ଜାତିକ ଭିତ୍ତିରେ ସମାଧାନ ହେବା ଉଚିତ କିନ୍ତୁ ତାଙ୍କ ଉଦ୍ଦେଶ୍ୟ କେହି ବୁଝିପାରି ନଥିଲେ ।

ଏସୀୟ ସମ୍ମିଳନୀ ଡକାଇବାର ତିନିଦିନ ପରେ ମାଉଣ୍ଟ ବାଟେନ୍ ଭାରତକୁ ବଡ଼ଲାଟ୍ ହୋଇ ଆସିଲେ । ସେ ଗାନ୍ଧୀ, ନେହେରୁ, ଜିନ୍ନା ଓ ଅନ୍ୟାନ୍ୟ ନେତାମାନଙ୍କ ସହିତ ଆଲୋଚନା କରି ଜାଣିପାରିଲେ ଯେ ଭାରତର ବିଭାଜନ ନିତାନ୍ତ ଆବଶ୍ୟକ । ତେଣୁ ମାଉଣ୍ଟବାଟେନ୍ ଜୁନ୍ ୨ ତାରିଖରେ ମୁଖ୍ୟ ନେତାମାନଙ୍କର ଏକ ବୈଠକ ଡକାଇ "ମାଉଣ୍ଟବାଟେନ ବିଭାଜନ ଯୋଜନା" ରୂପେ ପରିଚିତ ଅନୁମୋଦନ କରାଇ ନେଲେ । ତା' ପରଦିନ ସେ ଯୋଜନାର ବିସ୍ତୃତ ବିବରଣୀ ପ୍ରକାଶ କରିଥିଲେ । ଏହି ଘଟଣାର ଏକ ମାସ ପରେ ବ୍ରିଟିଶ୍ ପାର୍ଲାମେଣ୍ଟର ଭାରତ ସ୍ୱାଧୀନ ଆଇନ୍ ଗୃହୀତ ହେଲା ଓ ଅଗଷ୍ଟ ୧୫, ୧୯୪୭ରେ ସ୍ୱାଧୀନତା ଘୋଷଣା କରାଗଲା । ନେହେରୁ ହେଲେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ।

ପାକିସ୍ଥାନ ଭାରତର ଏକ ବିଖଣ୍ଡିତ ଅଂଶ ରୂପେ ଜନ୍ମଲାଭ କଲା । ମାତୃଭୂମିର ସ୍ୱାଧୀନତା ସମସ୍ତଙ୍କ ମନରେ ଆନନ୍ଦର ସ୍ରୋତ ଆଣି ଦେଇଥିଲା ସତ ମାତ୍ର ସେ ଆନନ୍ଦ ଥିଲା ଖୁବ୍ କ୍ଷଣସ୍ଥାୟୀ । ସାମ୍ପ୍ରଦାୟିକ ଗଣ୍ଡଗୋଳ ଯୋଗୁ ପଞ୍ଜାବ ଓ ବଙ୍ଗରେ ରକ୍ତସ୍ରୋତ ବହିବାକୁ ଲାଗିଲା । ପାକିସ୍ଥାନରେ ଥିବା ହିନ୍ଦୁ ଓ ଶିଖମାନଙ୍କ ଉପରେ ସେମାନେ ଅତ୍ୟାଚାର ଆରମ୍ଭ କରି

ଦେଲେ, ତେଣୁ ସେଠାରୁ ଶହ ଶହ ଶରଣାର୍ଥୀ ଦିଲ୍ଲୀକୁ ଚାଲି ଆସିଥିଲେ ।

ଭାରତରେ ବାସ କରୁଥିବା ମୁସଲମାନମାନେ ନିଜ ବାସସ୍ଥାନ ଛାଡ଼ି ପାକିସ୍ତାନ ଯିବାକୁ ରାଜି ହୋଇ ନ ଥିଲେ, ତେଣୁ ସେଠାରେ ମଧ୍ୟ ହତ୍ୟା, ଲୁଣ୍ଠନ ଓ ଅତ୍ୟାଚାର ଦେଖାଗଲା । ପାକିସ୍ତାନର ପ୍ରଧାନମନ୍ତ୍ରୀ ଲିଆକତଅଲି ଖାଁ ଓ ନେହେରୁ ବ୍ୟଥିତ ହୋଇ ପଞ୍ଜାବ ଭ୍ରମଣରେ ବାହାରିଲେ ଓ ସେଠାର ଦୃଶ୍ୟ ଦେଖି ଅତିଶୟ ମର୍ମାହତ ହୋଇ ପଡ଼ିଲେ । ତାଙ୍କର ପ୍ରଧାନମନ୍ତ୍ରୀତ୍ୱ ପ୍ରତି ସତେ ଯେପରି ଏହା ଥିଲା ଏକ ଆହ୍ୱାନ । ଗାନ୍ଧୀଙ୍କ ନୈତିକ ପ୍ରଭାବ ଓ ଦୃଢ଼ ସଙ୍କଳ୍ପ ବଳରେ ଅଟଳ ରହି ନେହେରୁ ମତବ୍ୟକ୍ତ କରିଥିଲେ ଯେ ଭାରତ ଏକ ସାମ୍ପ୍ରଦାୟିକ ରାଷ୍ଟ୍ର ନୁହେଁ, ଏହା ଏକ ଗଣତନ୍ତ୍ର ରାଷ୍ଟ୍ର । ଏହି ରାଷ୍ଟ୍ରରେ ସବୁ ନାଗରିକଙ୍କର ସମାନ ଅଧିକାର ଅଛି । ସେହି ସମୟରେ ନେହେରୁ ଓ ପଟେଲ୍‌ଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଥିଲା । ଜୟପ୍ରକାଶ, କୃପାଳନୀ ମଧ୍ୟ ନେହେରୁଙ୍କ ନୀତିକୁ ପସନ୍ଦ କରୁ ନ ଥିଲେ, ତେଣୁ ନେହେରୁ ପ୍ରତିଦିନ ଗାନ୍ଧୀଙ୍କ ପାଖକୁ ଉପଦେଶ ଓ ନିର୍ଦ୍ଦେଶନା ପାଇଁ ଯାଉଥିଲେ ଓ ତାଙ୍କଠାରୁ ଧୈର୍ଯ୍ୟ, ଉତ୍ସାହ ଓ ସାହାଯ୍ୟ ପାଉଥିଲେ ।

ଏତିକିବେଳେ ହିନ୍ଦୁ-ସଂଖ୍ୟାଲଘୁମାନଙ୍କର ସୁରକ୍ଷା ବାଧାପ୍ରାପ୍ତ ହେବାରୁ ଦିଲ୍ଲୀରେ ସାମ୍ପ୍ରଦାୟିକ ଗଣ୍ଡଗୋଳ ଦେଖାଦେଇଥିଲା । ଜାତିର ନୈତିକ ଅଧଃପତନ ଦେଖି ଗାନ୍ଧୀ ଆମରଣ ଅନଶନ ଆରମ୍ଭ କଲେ । ଫଳରେ ଦିଲ୍ଲୀରେ ସାମ୍ପ୍ରଦାୟିକ ଗଣ୍ଡଗୋଳ ଆସ୍ତେ ଆସ୍ତେ କମି ଯାଇଥିଲା । ନେହେରୁ ଓ ପଟେଲ୍‌ଙ୍କ ମଧ୍ୟରେ ସୁସମ୍ପର୍କ ସ୍ଥାପିତ ହୋଇ ପାରିଥିଲା ।

ହିନ୍ଦୁ ସମ୍ପ୍ରଦାୟର ଭକ୍ତମାନେ ନେହେରୁ ଓ ଗାନ୍ଧୀଙ୍କର ଧର୍ମ ନିରପେକ୍ଷ ମନୋଭାବ ପସନ୍ଦ କରୁ ନ ଥିଲେ । ସେମାନେ ଭାବୁଥିଲେ ତାଙ୍କର ଧର୍ମ ଉପାସନା ବିରୁଦ୍ଧରେ ଏହା ଏକ ପ୍ରବଳ ପ୍ରତିକ୍ରିୟା । ତେଣୁ ସେମାନେ ଗାନ୍ଧୀ ଓ ନେହେରୁଙ୍କର ଧର୍ମ ନିରପେକ୍ଷ ବିରୁଦ୍ଧ ଆନ୍ଦୋଳନ ଚଳାଇଲେ । ୧୯୪୮ ମସିହା ଜାନୁଆରୀ ୩୦ ତାରିଖ ଶୁକ୍ରବାର ସକାଳୁ ଗାନ୍ଧିଜୀ ତାଙ୍କର ପାଖେ ପାଖେ ରହୁଥିବା ଗୋଟିଏ ଲୋକକୁ କହିଥିଲେ, "ଆଜି ମୋର ଯେତେକ ଜରୁରୀ ଚିଠି ଅଛି ସେଗୁଡ଼ିକ ଆଣ, ତାର ଉତ୍ତର ମୁଁ ଆଜି ହିଁ ଦେବି; କାରଣ କାଲିକି ହୁଏତ ମୁଁ ଏ ଦୁନିଆରେ ନ ଥିବି ।" ତାଙ୍କର କହିଥିବା କଥା ପ୍ରକୃତରେ ସତରେ ପରିଣତ ହୋଇଯାଇ ଥିଲା । ସେହିଦିନ ସନ୍ଧ୍ୟାବେଳେ ବିରଳା ଭବନରୁ ବାହାରି ପ୍ରାର୍ଥନା ସଭାରେ ଯୋଗ ଦେବାପାଇଁ ନିକଟସ୍ଥ ବଗିଚାକୁ ଯିବା ସମୟରେ ଗୋଟିଏ ଲୋକ ତାଙ୍କୁ ନମସ୍କାର ଜଣାଇବାରୁ ସେ ପ୍ରତି ନମସ୍କାର ଜଣାଇଲେ । ତତ୍‌କ୍ଷଣାତ୍ ନାଥୁରାମ୍ ଗଡ଼ସେ ନାମକ ଏକ ହିନ୍ଦୁବ୍ୟକ୍ତି ତାର ରିଭଲଭର ବାହାର କରି ତାଙ୍କୁ ଲକ୍ଷ୍ୟ କରି ତିନିଥର ଗୁଳି ଚଳାଇଲା । ତାଙ୍କ ପାଟିରୁ "ହେ ରାମ" ଶବ୍ଦଟି ବାହାରି ପଡ଼ିଥିଲା ଓ ତାଙ୍କର ପିନ୍ଧିଥିବା ଧଳା ଖଦଡ଼ ଧୋତିଟି ସଙ୍ଗେ ସଙ୍ଗେ ଲାଲ୍ ରକ୍ତରେ ରଞ୍ଜିତ ହୋଇ ଯାଇଥିଲା । ସାରା ଦେଶ ତାଙ୍କ ମୃତ୍ୟୁରେ ସ୍ତମ୍ଭୀଭୂତ ହୋଇ ପଡ଼ିଥିଲା । ଅଚାନକ ବଜ୍ରପାତ ହେଲା ଭଳି ନେହେରୁ ତାଙ୍କ ପାଖରେ ଛୋଟ ପିଲାଟିଏ ଭଳି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଥିଲେ । ବେତାର ଭାଷଣରେ ସେ ଯେଉଁ ମର୍ମନ୍ତୁଦ ଭାଷଣ ଦେଇଥିଲେ ତାହା ଆଗରୁ ସେ ପ୍ରସ୍ତୁତ କରି ନଥିଲେ । କାରଣ ଆଗରୁ ଭାଷଣ ଦେବାପାଇଁ ପ୍ରସ୍ତୁତ ହେବାକୁ ତାଙ୍କୁ ସମୟ ମଧ୍ୟ

ମିଳି ନ ଥିଲା । ସେ ତାଙ୍କ ଭାଷଣରେ କହିଥିଲେ—"ଆମ୍ଭମାନଙ୍କ ଜୀବନ ଆଲୋକ ଲିଭିଗଲା, ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ । ଆମର ପ୍ରିୟ ନେତା ବାପୁ, ଯେ କି ଥିଲେ ଆମ ଜାତିର ପିତା ସେ ଆଜି ଇହ-ଜଗତରେ ନାହାନ୍ତି କିନ୍ତୁ ସେ ଯେଉଁ ଆଦର୍ଶଗୁଡ଼ିକ ଆମ ଆଗରେ ଥୋଇ ଦେଇ ଯାଇଛନ୍ତି ସେଗୁଡ଼ିକ ମନେରଖି ମଣି ଆମେ କାମ କରିବା ତେବେ ଆମେ ନିଶ୍ଚୟ ଆମ ଦେଶକୁ ଆଗେଇ ନେବା ।"

ମହାତ୍ମାଗାନ୍ଧୀଙ୍କ ମୃତ୍ୟୁପରେ ଭାରତବାସୀ ଅନୁତପ୍ତ ହୋଇ ସଙ୍ଗଠିତ ଜୀବନ ଯାପନ କରିବାକୁ ଇଚ୍ଛା କଲେ ହେଲେ ପୂର୍ବ-ବଙ୍ଗରେ ପୁନଶ୍ଚ ସାମ୍ପ୍ରଦାୟିକ ଗଣ୍ଡଗୋଳ ଆରମ୍ଭ ହୋଇ ଯାଇଥିଲା । ହିନ୍ଦୁ ମୁସଲମାନମାନଙ୍କ ସମ୍ପର୍କ ଖରାପ ହେବାକୁ ଲାଗିଲା । ନେହେରୁ ପରିସ୍ଥିତିକୁ ସମ୍ଭାଳିବାକୁ ଯାଇ ପାକିସ୍ତାନର ପ୍ରଧାନମନ୍ତ୍ରୀ ଲିଆକତ୍ ଅଲ୍ଲୀ ଖାଁଙ୍କ ସହିତ ଆଲୋଚନା କଲେ ଓ ୧୯୫୦ ମସିହା ଏପ୍ରିଲ ୮ ତାରିଖରେ ନୂଆଦିଲ୍ଲୀଠାରେ ଗୋଟିଏ ରାଜିନାମା ସ୍ୱାକ୍ଷରିତ ହେଲା । ଏହି ରାଜିନାମାରେ ଶରଣାର୍ଥୀ-ମାନଙ୍କର ସ୍ୱଗୃହକୁ ଫେରିବା ଅଧିକାରକୁ ସ୍ୱୀକୃତି ଦିଆଗଲା । ଉଭୟ ରାଜ୍ୟର ସଂଖ୍ୟାଲଘୁଙ୍କୁ ସମାନ ଅଧିକାର ପ୍ରଦାନ କରାଗଲା ଏବଂ ଅପହୃତା ଓ ଲୁଣ୍ଠିତ ଦ୍ରବ୍ୟର ପୁନରୁଦ୍ଧାର ଲାଗି ସୁରକ୍ଷା ବ୍ୟବସ୍ଥାକୁ ଅନୁମୋଦନ କରାଗଲା ।

## ନେହେରୁଙ୍କ ପ୍ରଶାସନିକ କାର୍ଯ୍ୟାବଳୀ

ଭାରତ ସ୍ୱାଧୀନ ହେବା ପରେ ନେହେରୁ ପ୍ରଧାନମନ୍ତ୍ରୀ ହୋଇ କେତେକ ଜଟିଳ କାର୍ଯ୍ୟ ଉପରେ ହସ୍ତକ୍ଷେପ କରିଥିଲେ । ସେ ନିଜେ ଶୃଙ୍ଖଳିତ ଜୀବନଯାପନ କରୁଥିଲେ, ତେଣୁ ଅନ୍ୟମାନଙ୍କୁ ମଧ୍ୟ ଶୃଙ୍ଖଳିତ ଜୀବନଯାପନ କରିବାକୁ ଉପଦେଶ ଦେଉଥିଲେ ।

ଲୋକମାନେ ତାଙ୍କୁ ଖୁବ୍ ଭଲ ପାଉଥିଲେ ଓ ତାଙ୍କର ଆଦର୍ଶକୁ ଅନୁକରଣ କରୁଥିଲେ । ସେ ଯେ କେବଳ ଭାରତୀୟମାନଙ୍କର ପ୍ରିୟ ଥିଲେ ତା ନୁହେଁ, ଭାରତ ବାହାରେ ମଧ୍ୟ ତାଙ୍କୁ ସମସ୍ତେ ଖୁବ୍ ଭଲ ପାଉଥିଲେ ।

ସ୍ୱାଧୀନତା ପରେ ନେହେରୁ ଭାରତ ପାଇଁ ଏକ ନୂତନ ସମ୍ବିଧାନ ତିଆରି କରିଥିଲେ । ଡିସେମ୍ବର ୯ ତାରିଖ ୧୯୪୬ ମସିହାରେ ନୂଆଦିଲ୍ଲୀଠାରେ ସମ୍ବିଧାନର ପ୍ରଥମ ଅଧିବେଶନ ବସିଲା । ଏହି ସଭାରେ କାଶ୍ମୀରଠାରୁ କୁମାରୀକା ପର୍ଯ୍ୟନ୍ତ ବିଭିନ୍ନ ସ୍ଥାନର ପ୍ରତିନିଧି ଓ ବିଶିଷ୍ଟ ନାରୀନେତ୍ରୀ ଯୋଗଦେଇ ଅଧିବେଶନଟିକୁ ମାଙ୍ଗଳ୍ୟ ମଣ୍ଡିତ କରିଥିଲେ ।

୧୯୪୬ ମସିହା ଡିସେମ୍ବର ୧୩ ତାରିଖରେ ନେହେରୁ ଉପସ୍ଥାପିତ କରି ଦର୍ଶାଇଥିଲେ ଯେ ଭାରତ ଏକ ସାର୍ବଭୌମ ସ୍ୱାଧୀନ ସାଧାରଣତନ୍ତ୍ର ଦେଶ ହେବା ଉଚିତ । ମିଳିତ ରାଷ୍ଟ୍ରର ବିଭିନ୍ନ ରାଜ୍ୟଗୁଡ଼ିକ ସ୍ୱାୟତ୍ତଶାସନର ଅଧିକାରୀ ହେବା ଉଚିତ୍, କେନ୍ଦ୍ର ତଥା ରାଜ୍ୟ କ୍ଷମତାକୁ ଲୋକମାନଙ୍କର କ୍ଷମତା ବୋଲି ଧରାଯିବା ଉଚିତ୍ ବା ସମସ୍ତେ ଯେପରି ସାମାଜିକ, ଅର୍ଥନୈତିକ ନ୍ୟାୟ ପାଆନ୍ତି ସମ୍ବିଧାନ ସେଥିପାଇଁ ଉଦ୍ୟମ କରିବା ଉଚିତ୍ ଓ ଭାବ, ଭାଷା, ମତ, ବିଶ୍ୱାସ ଓ ଧର୍ମର ସ୍ୱାଧୀନତା ରହିବା ଆବଶ୍ୟକ । ଅନୁନ୍ନତ ଓ ଆଦିବାସୀମାନଙ୍କ ସମ୍ବିଧାନ ସମାନ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ନ୍ୟାୟ ଦେବା ଉଚିତ୍ । ନେହେରୁଙ୍କର ଏହି ପ୍ରସ୍ତାବ ୧୯୪୮ ମସିହା ଜାନୁୟାରୀ ୨୨ ତାରିଖରେ ସମ୍ବିଧାନ ସଭାଦ୍ୱାରା ଗୃହୀତ ହେଲା । ୧୯୫୦ ମସିହା ଜାନୁୟାରୀ ୨୬ ତାରିଖରେ ତାହା କାର୍ଯ୍ୟକାରୀ କରାଗଲା । ଭାରତ ସେହିଦିନଠାରୁ "ଏକ ସାର୍ବଭୌମ ଗଣତନ୍ତ୍ର ସାଧାରଣ ତନ୍ତ୍ର"

ରାଷ୍ଟ୍ର ରୂପେ ପରିଗଣିତ ହେଲା । ମହାତ୍ମାଗାନ୍ଧୀ ଅସ୍ପୃଶ୍ୟତା ବିରୁଦ୍ଧରେ ଲଢ଼ିଥିଲେ କିନ୍ତୁ ତାହା ଆମ ଭାରତୀୟ ସମ୍ବିଧାନ ଆଇନ୍‌ର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଗଲା ।

## ନେହେରୁଙ୍କ ପଞ୍ଚବାର୍ଷିକ ଯୋଜନା

ନେହେରୁ ହୃଦୟଙ୍ଗମ କରିଥିଲେ ଯେ ଅର୍ଥନୈତିକ ଉନ୍ନତି ନ ହେଲେ କେବେହେଲେ ଦେଶ କୌଣସି କ୍ଷେତ୍ରରେ ଅଗ୍ରଣୀ ହୋଇ ପାରିବ ନାହିଁ । ତେଣୁ ସେ ବିଭିନ୍ନ ଉପାୟରେ ଅର୍ଥନୈତିକ ଉନ୍ନତି ପାଇଁ ଚେଷ୍ଟିତ ହୋଇ ପଡ଼ିଥିଲେ । ଭାରତର ଆର୍ଥିକ ଅବସ୍ଥା ସୁଦୃଢ଼ କରିବାପାଇଁ ସେ ଯୋଜନା କମିଶନ ଗଢ଼ିଥିଲେ । କମିଶନ ୧୯୫୧ ମସିହାରେ ପ୍ରଥମ ପଞ୍ଚବାର୍ଷିକ ଯୋଜନାର ପାଣ୍ଡୁଲିପି ପ୍ରଦାନ କଲା ଓ ୧୯୫୨ରେ ତାହା ଅର୍ପଣ କଲା । ପ୍ରଥମ ଯୋଜନା ଶେଷ ବେଳକୁ ଜାତୀୟ ଆୟ ଶତକଡ଼ା ୧୭ ହାରରେ, ମୁଣ୍ଡପିଛା ଆୟ ଶତକଡ଼ା ୧୧ ହାରରେ ବୃଦ୍ଧି ପାଇଥିଲା । କୃଷି ଉତ୍ପାଦନ ଶତକଡ଼ା ୨୦ ଭାଗ ବୃଦ୍ଧି ପାଇଥିଲା । ସିନ୍ଧ୍ରି, ଚିତ୍ତରଞ୍ଜନ ପ୍ରଭୃତି କାରଖାନା ପ୍ରତିଷ୍ଠା ହୋଇଥିଲା । ଗୋଷ୍ଠୀ ଉନ୍ନୟନ ଯୋଜନା ଫଳରେ ସର୍ବସାଧାରଣ ଆତ୍ମନିର୍ଭରଶୀଳ ହୋଇ ପାରିଥିଲେ ।

ଦ୍ୱିତୀୟ ଓ ତୃତୀୟ ଯୋଜନାରେ ଶିଳ୍ପ ବିକାଶ ପାଇଁ ଅଧିକ ଧ୍ୟାନ ଦିଆଯାଇଥିଲା । ଦୁର୍ଗାପୁର, ଭିଲାଇ ଓ ରାଉରକେଲା ଇସ୍ପାତ୍ କାରଖାନା ପ୍ରତିଷ୍ଠା କରାଯାଇଥିଲା । ନୁନ୍‌ମାଟି, ବରୌନି ଓ କୋୟାଲିଠାରେ ତୈଳ ବିଶୋଧନାଗାର ସ୍ଥାପିତ ହୋଇଥିଲା । ଅନେକଗୁଡ଼ିଏ ଗବେଷଣାଗାର ପ୍ରତିଷ୍ଠିତ ହୋଇ ଜନ-

ସାଧାରଣଙ୍କର ସ୍ୱାସ୍ଥ୍ୟର ଉନ୍ନତି ପ୍ରତି ଦୃଷ୍ଟି ଦିଆଯାଇଥିଲା । କୃଷିର ଉନ୍ନତି ପାଇଁ ଭୂସଂସ୍କାର ଆଇନ୍ ପ୍ରଣୟନ ହୋଇଥିଲା । ଦାମୋଦର ଉପତ୍ୟକା, ମୟୂରାକ୍ଷୀ, ମାଚ୍ଛକୁଣ୍ଡ, ଭାକ୍ରାନଙ୍ଗଲ ପ୍ରଭୃତି ବହୁମୁଖୀ ନଦୀ ଉପତ୍ୟକା ଯୋଜନା କାର୍ଯ୍ୟକାରୀ କରା-ଯାଇଥିଲା ଓ ଜାପାନୀ ପ୍ରଣାଳୀରେ ଚାଷର ପ୍ରସାର ଘଟିଥିଲା ।

ନେହେରୁ ସରକାରୀ ସ୍ତରରେ ବିକାଶ ପ୍ରତି ଦୃଷ୍ଟି ଦେବା ସଙ୍ଗେ ସଙ୍ଗେ ଗ୍ରାମାଞ୍ଚଳରେ କ୍ଷୁଦ୍ର କୁଟୀର ଶିଳ୍ପର ବିକାଶ ପାଇଁ ଅଧିକ ଦୃଷ୍ଟି ଦେଇଥିଲେ । ସେ କହୁଥିଲେ କ୍ଷୁଦ୍ରଶିଳ୍ପରେ ବିଦ୍ୟୁତ୍ ଶକ୍ତିର ବ୍ୟବହାର ଓ ଗ୍ରାମାଞ୍ଚଳରେ ବିଦ୍ୟୁତ୍ ଆଲୋକର ସରବରାହ ନିତାନ୍ତ ଆବଶ୍ୟକ । ସେ ବିଜ୍ଞାନର ବିକାଶ, ଯାତାୟାତ ସୁବିଧାର ସମ୍ପ୍ରସାରଣ ଓ ପରିବାର ନିୟନ୍ତ୍ରଣ ପାଇଁ ଅଧିକ ଧ୍ୟାନ ଦେଇଥିଲେ । ସେଥିପାଇଁ ସେ ବିଭିନ୍ନ ଆଞ୍ଚଳିକ ଗବେଷଣା ପ୍ରତିଷ୍ଠାନ ଉଦ୍‌ଘାଟନ କରିଥିଲେ । ଦେଶରେ ଅନେକ ରାସ୍ତାଘାଟ ଓ ରେଳପଥ ନିର୍ମାଣ କରିଥିଲେ ଓ ପରିବାର ନିୟନ୍ତ୍ରଣର ଆବଶ୍ୟ-କତା ଲୋକମାନଙ୍କୁ ବୁଝାଇ ଦେଇଥିଲେ । ସେ କହୁଥିଲେ "ଶ୍ରେଷ୍ଠ ପରିବାର ସୁଖୀ ପରିବାର । ଜନ୍ମ ନିୟନ୍ତ୍ରଣ ପାପ ନୁହେଁ କିନ୍ତୁ ଶିଶୁ ଅବହେଳା ଘୋର ପାପ ।" ଜନ୍ମ-ନିୟନ୍ତ୍ରଣ କାର୍ଯ୍ୟକ୍ରମକୁ ସେ ବାଧ୍ୟତାମୂଳକ କରି ନ ଥିଲେ ।

ନେହେରୁ ମିଶ୍ରିତ ଅର୍ଥନୀତିର ପୃଷ୍ଠପୋଷକ ଥିଲେ । ନେହେରୁ ଅର୍ଥନୈତିକ ଉନ୍ନତି ପ୍ରତି ଦୃଷ୍ଟି ଦେବା ସଙ୍ଗେ ସଙ୍ଗେ ରାଜ-ନୈତିକ ଅବସ୍ଥାର ମଧ୍ୟ ଉନ୍ନତି କରିଥିଲେ । ସେ ସମସ୍ତ ବୟସ୍କ ଲୋକଙ୍କୁ ନିର୍ବାଚନ ଅଧିକାର ଦାନ କରିଥିଲେ ଯେପରି ସମସ୍ତ ଲୋକ ରାଜନୈତିକ ସମତା ପାଆନ୍ତି ସେଥିପ୍ରତି ଉଦ୍‌ଯୋଗୀ

କରିଥିଲେ । ରାଜନୈତିକ ନ୍ୟାୟ କପରିଅ ସ୍ଫୂର୍ତ୍ତି ରକ୍ଷାର ସେଥିପ୍ରତି ଦୃଷ୍ଟି ଦେଇଥିଲେ । ସେ ଫ୍ରାନ୍ସରୁ ପଣ୍ଡିଚେରୀ ଓ ପର୍ତ୍ତୁଗାଲରୁ ଗୋଆ, ଡାମନ୍, ଡ଼ିଉ ଆଣି ଭାରତ ମିଳିତ ରାଷ୍ଟ୍ରର ଅନ୍ତର୍ଭୁକ୍ତ କରି ଭାରତର ପୂର୍ଣ୍ଣ ରାଜନୈତିକତା ଆଣିଥିଲେ ।

ସାମାଜିକ ଜୀବନର ଉନ୍ନତି ପାଇଁ ସେ ପଞ୍ଚବାର୍ଷିକ ଯୋଜନା, ଶିଳ୍ପର ଜାତୀୟକରଣ ଓ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ସାମାଜିକ ଜୀବନକୁ ସୁଖମୟ କରିବାପାଇଁ ସେ ଶିକ୍ଷା, ସ୍ୱାସ୍ଥ୍ୟର ଉନ୍ନତି କରିଥିଲେ । ସମାଜରୁ କୁସଂସ୍କାର ଦୂର କରିବାପାଇଁ ମଧ୍ୟ ସେ ଚେଷ୍ଟା କରିଥିଲେ ।

ସେ ଦେଶର ବିଭିନ୍ନ ସ୍ଥାନରେ ଚିକିତ୍ସାଳୟ ସ୍ଥାପନ କରିଥିଲେ, ଶିଶୁ ଓ ମାତୃମଙ୍ଗଳ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ବ୍ୟାୟାମକୁ ଶିକ୍ଷାନୁଷ୍ଠାନ ଓ ବିଭିନ୍ନ ପ୍ରତିଷ୍ଠାନର ଏକ ଅଙ୍ଗ ରୂପେ ଅନ୍ତର୍ଭୁକ୍ତ କରିଥିଲେ । ଯକ୍ଷ୍ମା ନିରୋଧ, ମ୍ୟାଲେରିଆ ନିରାକରଣ ଓ ବସନ୍ତ ନିବାରଣ ପାଇଁ ଅନେକ ଯୋଜନା କରିଥିଲେ ।

ଶିକ୍ଷାର ଉନ୍ନତି ପାଇଁ ଗ୍ରାମ ଓ ସହରରେ ଅନେକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ଶିକ୍ଷାକୁ ଉଚ୍ଚ, ଉନ୍ନତ ଓ ଯୁଗୋପଯୋଗୀ କରିବା ପାଇଁ ସେ ଉଦ୍ୟମ କରିଥିଲେ । ସେ ପୁରୁଷମାନଙ୍କ ଶିକ୍ଷା ଅପେକ୍ଷା ନାରୀଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ସେ କହୁଥିଲେ, ନାରୀହିଁ ଜାତିର ମାତା । ଶିଶୁର ଶିକ୍ଷା ଓ ଚରିତ୍ର ଗଠନ ନାରୀମାନଙ୍କ ହାତରେ । ସେ କହୁଥିଲେ ନାରୀମାନେ ମଧ୍ୟ ପୁରୁଷମାନଙ୍କ ଭଳି ସବୁ କ୍ଷେତ୍ରରେ ପାଦ ମିଳାଇ ଚାଲିପାରିବେ ।

ଶିକ୍ଷାକୁ ଅଧିକ ସରସ ଓ ସୁନ୍ଦର କରିବା ପାଇଁ ସେ ସାହିତ୍ୟ, କଳା, ସ୍ଥାପତ୍ୟ, ନାଟକ ପ୍ରଭୃତିର ମଧ୍ୟ ପ୍ରସାର କରିଥିଲେ । ଜାତୀୟ ସ୍ତରରେ ତିନୋଟି ଏକାଡେମୀ ଓ ଗୋଟିଏ ଚିତ୍ରଶାଳା ଥିବା ସତ୍ତ୍ୱେ ସେ ଦେଶରେ ସାହିତ୍ୟ ଏକାଡେମୀ, ଲଳିତକଳା ଏକାଡେମୀ, ସଙ୍ଗୀତ ନାଟକ ଏକାଡେମୀ ପ୍ରତିଷ୍ଠା କରିଥିଲେ । ସେ ପ୍ରତ୍ୟେକ ରାଜ୍ୟରେ କଳା ପରିଷଦ, ନୃତ୍ୟକଳା କେନ୍ଦ୍ର ଓ ସଙ୍ଗୀତ ମହାବିଦ୍ୟାଳୟ ସ୍ଥାପିତ କରିଥିଲେ ।

ସାମାଜିକ ପରିବେଷ୍ଟନୀକୁ ପବିତ୍ର ଓ ନିଷ୍କଳଙ୍କ କରିବା ପାଇଁ ଅସ୍ପୃଶ୍ୟତା ଓ ବାଲ୍ୟବିବାହ ଆଦି କୁସଂସ୍କାରଗୁଡ଼ିକ ଉଠାଇ ଦେଇଥିଲେ । ସେ ଧର୍ମ ନିରପେକ୍ଷ ନୀତିଦ୍ୱାରା ସମାଜର ଧର୍ମାନ୍ଧତା ଦୂର କରିଥିଲେ । ଦୁର୍ନୀତି ଦୂର କରିବାପାଇଁ ସେ ସମାଜ କଲ୍ୟାଣ ପରିଷଦ ପ୍ରତିଷ୍ଠା କରିଥିଲେ ।

## ପଡ଼ୋଶୀ ଦେଶମାନଙ୍କ ସହ ସୁସମ୍ପର୍କ

ନେହେରୁ ପଡ଼ୋଶୀ ଦେଶମାନଙ୍କ ସହିତ ସଦ୍‌ଭାବ ପ୍ରତିଷ୍ଠା କରି ପାରିଥିଲେ, ତେଣୁ ବିଭିନ୍ନ ରାଜ୍ୟ ସହିତ ଭାରତର ସୁସମ୍ପର୍କ ସ୍ଥାପିତ ହୋଇ ପାରିଥିଲା । ଯଦିଓ ପାକିସ୍ଥାନ ଭାରତଠାରୁ ବିଚ୍ଛିନ୍ନ ହୋଇ ଯାଇଥିଲା, ପରେ ଭାରତର ପ୍ରକୃତ ରୂପ ଦେଖି ଓ ବିଭିନ୍ନ ଅର୍ଥନୈତିକ ଓ ପ୍ରତିରକ୍ଷାଜନିତ କାରଣରୁ ସେ ଭାରତ ସହିତ ବନ୍ଧୁତା ସ୍ଥାପନ କରିଥିଲା ।

ନେପାଳ, ବର୍ମା, ମାଲେସିଆ ଯଦିଓ ଗୋଟିଏ ଗୋଟିଏ ଅଲଗା ସ୍ୱାଧୀନ ରାଷ୍ଟ୍ର ଥିଲା ତଥାପି ନେହେରୁ ସେମାନଙ୍କ ସହିତ ସୁସମ୍ପର୍କ ରଖିଥିଲେ । ଏହାଛଡ଼ା ଆରବ, ଯୁଗୋସ୍ଲୋଭିଆ ଜାକୋସ୍ଲୋଭିଆ, କାନଡ଼ା, କ୍ୟୁବା, ଜାପାନସହିତ ମଧ୍ୟ ଭାରତର

ସମ୍ପର୍କ ଖୁବ୍ ଭଲ ଥିଲା । ଚୀନ୍ ଆକ୍ରମଣ ବେଳେ ରୁଷ ଭାରତକୁ ମିଗ୍ ବିମାନ ସାହାଯ୍ୟ ଦେଇଥିଲା ।

ସେ ଯେ କେବଳ ଆନ୍ତର୍ଜାତିକ ସଦ୍‌ଭାବ ପ୍ରତିଷ୍ଠା କରିଥିଲେ ତା ନୁହେଁ, ସେ ମଧ୍ୟ ଶାନ୍ତିର ବାଣୀ ପ୍ରଚାର କରି "ବିଶ୍ୱଶାନ୍ତିର ଅଗ୍ରଦୂତ" ଉପାଧି ଲାଭ କରିଥିଲେ । ସେ ପଞ୍ଚଶୀଳ ନୀତି ପ୍ରଦାନ କରି ଭାରତ ଓ ଚୀନ୍ ମଧ୍ୟରେ ସୁସମ୍ପର୍କ ଆଣି ପାରିଥିଲେ ଓ ଦେଶ ଦେଶ ମଧ୍ୟରେ ନ୍ୟାୟ ସଙ୍ଗତ ସ୍ଥାପନ କରି ପାରିଥିଲେ ।

## ନେହେରୁଙ୍କ ନିରପେକ୍ଷ ନୀତି

ସେ ନିରପେକ୍ଷ ନୀତିର ଉପାସକ ଥିଲେ । ଶୀତଳଯୁଦ୍ଧ ବା ଗୋଷ୍ଠୀ ବିବାଦର ତୀବ୍ର ମନୋମାଳିନ୍ୟ ଭିତରେ ନିରପେକ୍ଷ ରହି ଏବଂ ସମୟେ ସମୟେ ଉଭୟ ପକ୍ଷ ମଧ୍ୟରେ ମଧ୍ୟସ୍ଥତା କରି ଭକ୍ତି ଓ ସମ୍ମାନ ପାଇବା ସଙ୍ଗେ ସଙ୍ଗେ ପୂର୍ବ ଓ ପଶ୍ଚିମ ଉଭୟ ଗୋଷ୍ଠୀର ନେତା ରୁଷିଆ ଓ ଆମେରିକାଠାରୁ ମଧ୍ୟ ସ୍ନେହ, ଶ୍ରଦ୍ଧା, ସମ୍ମାନ ଓ ସାହାଯ୍ୟ ପାଇ ପାରିଥିଲେ ।

ନେହେରୁଙ୍କୁ "ନବ ଭାରତର ନିର୍ମାତା" ଆଖ୍ୟା ଦିଆଯାଇ ଥିଲା । ସେ ଆମ ଭାରତୀୟମାନଙ୍କ ମନରେ ଏକ ବିପ୍ଳବର ସୂତ୍ରପାତ କରିଥିଲେ । ପରିବର୍ତ୍ତିତ ପରିସ୍ଥିତି ସହିତ ଖାପଖୁଆଇ ଚଳିବା ପାଇଁ ସେ ପୁରାତନ ପରମ୍ପରା ଓ ପୁରାତନ ପ୍ରଥା ବିରୁଦ୍ଧରେ ବିପ୍ଳବବାଣୀ ପ୍ରଚାର କରିଥିଲେ । ଜାତିର ପ୍ରଗତି ଓ ସାମାଜିକ ଜୀବନର ଉନ୍ନତି ପାଇଁ ସେ ସର୍ବଦା ଜାଗ୍ରତ ଥିଲେ । ସେ ଭଲଭାବେ ହୃଦୟଙ୍ଗମ କରି ପାରିଥିଲେ ଯେ ସମାଜର ଉନ୍ନତି ବିନା ଦେଶର ଉନ୍ନତି କଦାପି ସମ୍ଭବ ନୁହେଁ । ଦେଶରୁ ଦାରିଦ୍ର୍ୟ ଦୂର ନ ହେଲେ ସମାଜର ଉନ୍ନତି ହୋଇ ପାରିବ ନାହିଁ । ତେଣୁ ସେ

ଅନୁନ୍ନତ ଆଦିବାସୀମାନଙ୍କୁ ସମାନ ସାମାଜିକ ସ୍ତରକୁ ଆଣିବା ପାଇଁ ଶିକ୍ଷା, ଚାକିରି ଓ ସାହାଯ୍ୟ କ୍ଷେତ୍ରରେ ସେମାନଙ୍କୁ ସ୍ୱତନ୍ତ୍ର ସୁବିଧା ଦେଉଥିଲେ । ଦେଶସାରା ଶିକ୍ଷାନୁଷ୍ଠାନ, ସ୍ୱାସ୍ଥ୍ୟ-କେନ୍ଦ୍ର, ଗବେଷଣାଗାର ପ୍ରଭୃତି ପ୍ରତିଷ୍ଠା କରିଥିଲେ । ଭିଲାଇ, ଦୁର୍ଗାପୁର ଓ ରାଉରକେଲାର ଇସ୍ପାତ କାରଖାନା, ବରଉଣି ନୁନ୍‌ମାଟି ଓ କୋୟାଲିର ତୈଳ ବିଶୋଧନାଗାର ପ୍ରଭୃତି ଶିଳାନୁଷ୍ଠାନ ସ୍ଥାପିତ କରିଥିଲେ । କୃଷି ଉତ୍ପାଦନ ଉପରେ ଅଧିକ ଧ୍ୟାନ ଦେଇଥିଲେ ।

## ନେହେରୁଙ୍କ ପଞ୍ଚଶୀଳ ନୀତି

ନେହେରୁ ଗାନ୍ଧୀଙ୍କର ପଥ ପ୍ରଦର୍ଶକ ଥିଲେ । ସେ ହୃଦୟଙ୍ଗମ କରିଥିଲେ ଯେ ଶାନ୍ତି ପ୍ରତିଷ୍ଠା ପାଇଁ ଶାନ୍ତିପୂର୍ଣ୍ଣ ମାର୍ଗ ହିଁ କାମ୍ୟ । ସେ ଶାନ୍ତିର ମୂର୍ତ୍ତି ପ୍ରତୀକ ଓ ଶାନ୍ତିର କପୋତ ରୂପେ ସୁପରିଚିତ ଥିଲେ । ୧୯୫୪ ମସିହାରେ ସେ ପଞ୍ଚଶୀଳ ନୀତି ପ୍ରସ୍ତାବ ଦେଇଥିଲେ । ଏହି ନୀତିଗୁଡ଼ିକ ବିଶ୍ୱଶାନ୍ତି ପ୍ରତିଷ୍ଠାରେ ଖୁବ୍ ସାହାଯ୍ୟ କରିଥିଲା । ଏହି ନୀତିର ମୁଖ୍ୟ ଉପାଦାନଗୁଡିକ ହେଲା—

୧—ପରସ୍ପରଙ୍କର ସୀମାଗତ ଅଖଣ୍ଡତା ଓ ସାର୍ବଭୌମତା ପ୍ରତି ପାରସ୍ପରିକ ସମ୍ମାନ ।

୨—ଅନାକ୍ରମଣ ।

୩—ପରସ୍ପରଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ଅନୁଲଙ୍ଘନ ।

୪—ସାମ୍ୟ ଓ ପାରସ୍ପରିକ ସହିତ ହିତ ସାଧନ ।

୫—ଶାନ୍ତିପୂର୍ଣ୍ଣ ସହାବସ୍ଥାନ ।

ନେହେରୁଙ୍କର ଏହି ପଞ୍ଚଶୀଳ ନୀତି ଯେ କେବଳ ଭାରତ, ଚୀନ୍ ଓ ତିବ୍ବତ୍ ମଧ୍ୟରେ ଆବଦ୍ଧ ଥିଲା ତା ନୁହେଁ, ଏହାର ପ୍ରଭାବ ମଧ୍ୟ ଅନ୍ୟାନ୍ୟ ଦେଶମାନଙ୍କ ଉପରେ ପଡ଼ିଥିଲା । ତାଙ୍କର ନୀତି-ଗୁଡ଼ିକ ମଧ୍ୟ ଜାତିସଙ୍ଘ ସନନ୍ଦର ୧, ୨ ଓ ୫୧ ପ୍ରଭୃତି ଧାରାରେ ସ୍ଥାନ ପାଇଥିବାରୁ ନେହେରୁଙ୍କ ପଞ୍ଚଶୀଳର ମୂଲ୍ୟ ଆନ୍ତର୍ଜାତୀୟ ସ୍ତରରେ ଉପଲବ୍ଧ ହୋଇଥିଲା ।

ନେହେରୁ ଆନ୍ତର୍ଜାତିକ ଭାତୃଭାବ ପ୍ରତିଷ୍ଠା ପାଇଁ ଶାନ୍ତିବ୍ରତ ଧାରଣ କରିଥିଲେ । ସେ ହୃଦୟଙ୍ଗମ କରିଥିଲେ ଯେ ବିଶ୍ୱ ଐକ୍ୟ ସ୍ଥାପନ ଦିଗରେ ଜାତିସଙ୍ଘ ଏକ ବଳିଷ୍ଠ ପଦକ୍ଷେପ, ତେଣୁ ସେ ଜାତିସଙ୍ଘକୁ ଖୁବ୍ ସମ୍ମାନ ଦେଖାଉଥିଲେ ଓ ଜାତିସଙ୍ଘର କର୍ତ୍ତବ୍ୟ ଉପରେ ଗୁରୁତ୍ୱ ଆରୋପ କରୁଥିଲେ ।

ନେହେରୁଙ୍କ ନିରପେକ୍ଷ ନୀତି ଭାରତ ପକ୍ଷେ ଏକ ଅମୂଲ୍ୟ ସମ୍ପଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ମୃତ୍ୟୁ ପରେ ମଧ୍ୟ ତାଙ୍କର ନିରପେକ୍ଷ ନୀତି ଓ ତାର ଉଦ୍ଦେଶ୍ୟ ଅପରିବର୍ତ୍ତିତ ରହିଛି । ୧୯୬୫ ମସିହାରେ ପାକିସ୍ଥାନ ପକ୍ଷରୁ ଭାରତ ଉପରେ ଯେଉଁ ବର୍ବରୋଚିତ ଆକ୍ରମଣ ହେଲା ଏବଂ ଚୀନ୍ ମଧ୍ୟ ପାକିସ୍ଥାନ ପକ୍ଷ ସମର୍ଥନ କରିବ ବୋଲି ଏହି ସଙ୍କଟମୟ ପରିସ୍ଥିତି ବେଳେ ଶାସ୍ତ୍ରୀ ସରକାର ଭାରତର ନିରପେକ୍ଷ ନୀତିକୁ ଦୃଢ଼ ଓ ଅଟଳ ରଖିଥିଲେ ଓ ପ୍ରାୟ ଚାଳିଶ କୋଟି ଜନତା ତାଙ୍କର ଏକତା ବଳରେ ଚୀନ-ପାକିସ୍ଥାନର ମିଳିତ ଆକ୍ରମଣକୁ ପ୍ରତିହତ କରିବ ବୋଲି ଦୃଢ଼ ପରିକର ହୋଇଥିଲେ ।

ନେହେରୁଙ୍କ ସର୍ବିସ୍ୱ ନିରପେକ୍ଷ-ନୀତି ଆମର ଗୌରବ ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ଆନ୍ତର୍ଜାତିକ ପରିସରରେ ଭାରତକୁ

ସମ୍ମାନିତ କରି ପୃଥିବୀରେ ମଧ୍ୟ ଶାନ୍ତି ପ୍ରତିଷ୍ଠା କରିବା ଦିଗରେ ଅଶେଷ ସାହାଯ୍ୟ କରିଛି । ଏହା ବିଶ୍ୱର ସାଧକ ଓ ଭାରତ ପାଇଁ ମଧ୍ୟ ଆଶୀର୍ବାଦ ।

୧୯୬୨ ମସିହାରେ ଯେତେବେଳେ ଚୀନ୍ ଭାରତ ଉପରେ ଆକ୍ରମଣ କରିଥିଲା ସେତେବେଳେ ନେହେରୁଙ୍କର ନିରପେକ୍ଷ ନୀତି ବିଶେଷ ସହାୟକ ହୋଇଥିଲା । ନେହେରୁ ନିରପେକ୍ଷ ନୀତିକୁ ଅକ୍ଷୁର୍ଣ୍ଣ ରଖିଥିବାରୁ ଭାରତ ଆମେରିକାର ସାହାଯ୍ୟ ପାଇବା ସଙ୍ଗେ ସଙ୍ଗେ ଫ୍ରାନ୍ସ୍, ଇଂଲଣ୍ଡ, କାନଡ଼ା, ମାଳୟ ପ୍ରଭୃତି ରାଷ୍ଟ୍ରରୁ ସାମରିକ ସାହାଯ୍ୟ ପାଇଥିଲା ।

ନେହେରୁ ଏକାଧାରରେ ଜଣେ ଐତିହାସିକ, ବୈଜ୍ଞାନିକ, ଲେଖକ, ବକ୍ତା, ସାହିତ୍ୟିକ, ସୌନ୍ଦର୍ଯ୍ୟ ଉପାସକ, ନେତା ଓ ବିଶ୍ୱପ୍ରେମିକ ଥିଲେ ।

## ଐତିହାସିକ ଭାବେ ନେହେରୁ

ଟ୍ରେଭେଲିୟନ୍ ପ୍ରଣୀତ ଗାରିବାଲଡ଼ିଙ୍କ ଜୀବନୀ ବିଶ୍ୱବ୍ୟାପୀ ଜନଜାଗରଣ ଓ ଭାରତ ସ୍ୱାଧୀନତା ଆନ୍ଦୋଳନ ନେହେରୁଙ୍କୁ ଇତିହାସ ପ୍ରତି ଆକୃଷ୍ଟ କରିଥିଲା । ସେ ଭାରତର ପ୍ରାଚୀନ ଇତିହାସ ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ଫ୍ରାନସ୍, ଇଟାଲି ଆମେରିକା, ରୁଷିଆ ପ୍ରଭୃତି ରାଜ୍ୟର ଇତିହାସ ବିଷୟ ଆଲୋଚନା କରି ଭାରତକୁ ଆବିଷ୍କାର କରିଥିଲେ ଓ ପୃଥିବୀ ଇତିହାସର ରୂପରେଖ ଆଙ୍କିଥିଲେ । ପୃଥିବୀ ଇତିହାସରେ ବୈଜ୍ଞାନିକ ଭାବେ ସେ ସମଗ୍ର ପୃଥିବୀର ଐତିହାସିକ କ୍ରମବିକାଶ ଓ ମାନବ ସଭ୍ୟତାର ବିବର୍ତ୍ତନ ବିଷୟରେ ସୁଚିନ୍ତିତ ଭାବଧାରା ପରିବେଷଣ କରିଥିଲେ ।

## ବୈଜ୍ଞାନିକ ଭାବେ ନେହେରୁ

ନେହେରୁ ଜଣେ ବୈଜ୍ଞାନିକ ଥିଲେ । ତାଙ୍କର ବାଲ୍ୟ ଶିକ୍ଷା ବ୍ରୁକସ୍ ସାହେବଙ୍କ ଉପରେ ନ୍ୟସ୍ତ ଥିଲା । ସେ ତାଙ୍କ ବାସଗୃହ ଆନନ୍ଦ ଭବନରେ ତାଙ୍କ ପାଇଁ ଗୋଟିଏ ପରୀକ୍ଷାଗାର ସ୍ଥାପନ କରି ବିଜ୍ଞାନର ପରୀକ୍ଷାଗୁଡ଼ିକ ତାଙ୍କୁ ଗୋଟି ଗୋଟି କରି ଦେଖାଇ ବିଜ୍ଞାନ ଶିକ୍ଷା ପ୍ରତି ତାଙ୍କର ଆଗ୍ରହ ସୃଷ୍ଟି କରୁଥିଲେ । ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ରସାୟନିକ ବିଦ୍ୟା, ପଦାର୍ଥ ବିଦ୍ୟା ପ୍ରଭୃତି ପ୍ରାକୃତିକ ବିଜ୍ଞାନ ପଢ଼ିଥିଲେ । ସେ ଜାଣିଥିଲେ ଯେ ବିଜ୍ଞାନର ବିକାଶ ଉପରେ ମାନବ ସଭ୍ୟତାର ଉନ୍ନତି ନିର୍ଭର କରେ । ନେହେରୁଙ୍କ ଅଦ୍ୟମ ଚେଷ୍ଟା ଫଳରେ ଆମ ଦେଶରେ ଅନେକ ଜାତୀୟ ଗବେଷଣାଗାର ଓ ପରମାଣୁ ପ୍ରତି-ରୋଧକ ପ୍ରତିଷ୍ଠିତ ହୋଇଛି ।

ବିଜ୍ଞାନକୁ ଜନହିତକର କାର୍ଯ୍ୟରେ ଲଗାଇବା ପାଇଁ ସେ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଉଥିଲେ ଓ କହୁଥିଲେ ଯେ ପରମାଣୁ ଶକ୍ତିକୁ ଧ୍ୱଂସମୂଳକ କାର୍ଯ୍ୟରେ ବ୍ୟବହାର କଲେ ସମଗ୍ର ବିଶ୍ୱ ଲୋପ ହୋଇଯିବ କିନ୍ତୁ ତାକୁ କଲ୍ୟାଣରେ ବିନିଯୋଗ କରି ପାରିଲେ ପୃଥିବୀରେ ଶାନ୍ତି ଓ ସୁଖ ସମ୍ପଦ ବିରାଜିତ ହେବ ।

## ଆଇନଜ୍ଞ ଭାବେ ନେହେରୁ

ନେହେରୁଙ୍କ ପିତା ମୋତିଲାଲ ଜଣେ ସୁଦକ୍ଷ ଆଇନଜ୍ଞ ଥିଲେ । ଯଦିଓ ନେହେରୁ ବିଲାତରୁ ଆଇନ୍ ପାସ୍ କରିଥିଲେ, ତାଙ୍କର ଓକିଲାତି ଜୀବନ ପ୍ରତି ଆଦୌ ସ୍ପୃହା ନଥିଲା । ତେଣୁ ସେ

ଆଇନ୍ ଚର୍ଚ୍ଚାକୁ ନଜର ଜୀବିକା ରୂପେ ଗ୍ରହଣ କରି ନ ଥିଲେ । ଭାରତର ସ୍ୱାଧୀନତା ଆଣିବା ପାଇଁ ଓ ବ୍ରିଟିଶ ସରକାରଙ୍କ ଆଇନକୁ ଛିନ୍ନଭିନ୍ନ କରିବା ପାଇଁ ସେ ପ୍ରୟାସ କରିଥିଲେ । ୧୯୪୫ ମସିହା ଭାରତୀୟ ଜାତୀୟ ନୌବାହିନୀର ବିଚାର ବେଳେ ସେ ବାରିଷ୍ଟରୀ ପୋଷାକରେ ଅଦାଲତରେ ଅବତରଣ କରିଥିଲେ । ସେ ସବୁବେଳେ ବିଚାର ବିଭାଗର ସ୍ୱାଧୀନତାର ପକ୍ଷପାତି ଥିଲେ । ନେହେରୁ ଯୁକ୍ତି କରୁଥିଲେ ଯେ ଭାରତୀୟ ବିଚାର ବିଭାଗର ମର୍ଯ୍ୟାଦା ବଜାୟ ରଖିବାକୁ ହେଲେ କୌଣସି ପ୍ରକାର ରାଜନୈତିକ ହସ୍ତକ୍ଷେପ ବରଦାସ୍ତ କରାଯାଇ ନ ପାରେ, ତେଣୁ ସୁପ୍ରିମ୍ କୋର୍ଟର ପୂର୍ବ ମୁଖ୍ୟବିଚାରପତି ମେହେରଚାନ୍ଦ ତାଙ୍କୁ ନ୍ୟାୟର ଏକ ସ୍ତମ୍ଭ ବୋଲି ଆଖ୍ୟା ଦେଇଛନ୍ତି ।

## ନେହେରୁଙ୍କର ବାଗ୍ମିତା

ନେହେରୁ ଜଣେ ସୁବକ୍ତା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଭାଷଣ ଦେବା ସମୟରେ ଭାବପ୍ରବଣ ହୋଇ, କେତେବେଳେ ଦୁଃଖରେ ବିଭୋର ହୋଇ ଆଖିରୁ ଲୁହ ପୋଛୁଥିଲେ ଓ କେତେବେଳେ ଆନନ୍ଦରେ ହସି ହସି ଗଡ଼ି ଯାଉଥିଲେ । ସେ ଯେ କେବଳ ଭାରତୀୟମାନଙ୍କୁ ନଜର କରି ପାରିଥିଲେ ତା ନୁହେଁ, ସେ ପୃଥିବୀର ବିଭିନ୍ନ ଅଞ୍ଚଳରେ ଭାଷଣ ଦେଇ ସମସ୍ତଙ୍କୁ ନଜର କରି ପାରିଥିଲେ । ସେ ଅନର୍ଗଳ ଭାଷଣ ଦେଇ ସମସ୍ତଙ୍କୁ ସ୍ତବ୍ଧ କରି ଦେଉଥିଲେ । ସେ ମଧ୍ୟ ପାର୍ଲାମେଣ୍ଟରେ ଭାଷଣ ଦେବାବେଳେ, ବିଭିନ୍ନ ଦଳର ସଭ୍ୟମାନେ ସ୍ତମ୍ଭିଭୂତ ହୋଇଯାଉଥିଲେ ।

## କୁସଂସ୍କାର ଦୂରୀକରଣ

ନେହେରୁ ସମାଜରୁ କୁସଂସ୍କାର ଦୂର କରିବାପାଇଁ ଧର୍ମ ବୈଷମ୍ୟ, ଜାତିଭେଦ, ନାରୀ ଅବହେଳା, ବାଲ୍ୟବିବାହ ପ୍ରଥା ପ୍ରଭୃତି ବିରୁଦ୍ଧରେ ସଂଗ୍ରାମ ଚଳାଇଥିଲେ । ସମ୍ବିଧାନ ସଂଶୋଧନ କରି ଜମିଦାରୀମାନଙ୍କର ପ୍ରପୀଡ଼ନ ଦୂର କରିଥିଲେ । ସେ ତଦନ୍ତ କମିଶନ ବସାଇ ଦୁର୍ନୀତି ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । ଜୀବନର ଶେଷ ପର୍ଯ୍ୟାୟରେ ସେ ସଦାଚାର ସମିତି ଗଠନ କରି ତାର ଦାୟିତ୍ୱ ଗୁଲଜାରିଲାଲ ନନ୍ଦାଙ୍କୁ ଦେଇଥିଲେ ।

### ଚିରସ୍ମରଣୀୟଙ୍କ ଚରିତ୍ର ବୈଚିତ୍ର

ନେହେରୁ ଏକାଧାରରେ ଥିଲେ ସରଳ, ଉଦାର, ଗୁଣଗ୍ରାହୀ ମନସ୍ୱୀ, ଦୃଢ଼ ପ୍ରତିଜ୍ଞ, ଧର୍ମନିରପେକ୍ଷ, ଆତ୍ମନିର୍ଭରଶୀଳ ଶିଶୁବତ୍ସଳ । ତେଣୁ ସେ ଲୋକପ୍ରିୟ ହୋଇ ପାରିଥିଲେ ।

## ବିଶିଷ୍ଟ ଲେଖକ ରୂପେ ନେହେରୁ

ସେ ଜଣେ ପ୍ରସିଦ୍ଧ ରାଜନୀତିଜ୍ଞ ଓ ବିଶିଷ୍ଟ ଲେଖକ ଥିଲେ । ସେ ଜେଲରେ ଥିବା ସମୟରେ ତାଙ୍କର କନ୍ୟା ଇନ୍ଦିରାଙ୍କ ନିକଟକୁ ତାଙ୍କର ମାନବ ସଭ୍ୟତାର ବିବର୍ତ୍ତନ, ପୃଥିବୀ ଇତିହାସର କ୍ରମବିକାଶ, ମାନବ ଦର୍ଶନ ଉପରେ ଅନେକ ଚିଠି ଲେଖିଥିଲେ । ସେହି ଲେଖାଗୁଡ଼ିକ ପରେ Gimplises of World History ରୂପ ନେଇ ଆତ୍ମପ୍ରକାଶ କରିଥିଲା । ତା ପରେ ତାଙ୍କର ଆତ୍ମ-ଜୀବନୀ ରଚିତ ହୋଇଅଛି । ଇତିହାସକୁ କପରି ଅନୁଭୂତିରେ ପରିଣତ କରି ପାରିଛନ୍ତି ଓ ନିଜ ଜୀବନକୁ କପରି ଏକ ଇତିହାସ ରୂପେ ଉପସ୍ଥାପିତ କରି ପାରିଛନ୍ତି ତାହା ସେଥିରୁ ଜଣାପଡ଼େ ।

ସେ ଜେଲ୍‌ରେ ଥିବାବେଳେ "ଭାରତ ଆବିଷ୍କାର" ଲେଖିଥିଲେ । ସେଥିରୁ ସେ ଭାରତର ଅତୀତକୁ ବୁଝି ଅନ୍ୟମାନଙ୍କୁ ବୁଝାଇବାକୁ ସମର୍ଥ ହୋଇଥିଲେ । ଜାନକରଙ୍କ ମତରେ ଏହା ଭାରତ ଇତିହାସ ଉପରେ ଏକ ପ୍ରଧାନ ଗ୍ରନ୍ଥ । ଏହା ଯେ କେବଳ ଭାରତର ଆବିଷ୍କାର ତା ନୁହେଁ, ଏହା ନେହେରୁଙ୍କ ଆବିଷ୍କାର ।

## ନେହେରୁଙ୍କ ସାହିତ୍ୟ, କଳା ଓ ସଂସ୍କୃତି-ପ୍ରୀତି

ନେହେରୁ ହୃଦୟଙ୍ଗମ କରି ପାରିଥିଲେ ଯେ ମାନବ ଜୀବନର ବିକାଶ ପାଇଁ ସାହିତ୍ୟ, କଳା ଓ ସଂସ୍କୃତି ନିତାନ୍ତ ଆବଶ୍ୟକ । ତେଣୁ ସେ ଅନେକ ବିଦ୍ୟାଳୟ, ମହାବିଦ୍ୟାଳୟ, ପାଠାଗାର ଓ ସଂଗ୍ରହାଳୟ ପ୍ରତିଷ୍ଠା କରିଥିଲେ । ସେ ନୃତ୍ୟ, ସଙ୍ଗୀତ ଓ ନାଟକର ମଧ୍ୟ ପୃଷ୍ଠପୋଷକ ଥିଲେ । ହୁମାୟୁନ୍ କବିର କହିଥିଲେ ନେହେରୁ ନ୍ୟାୟ ବିଚାର, ନ୍ୟାଯ୍ୟ ବ୍ୟବହାର, ବିଜ୍ଞାନ ଓ କଳା ସମସ୍ତ ପ୍ରକାର ସମ୍ମାନ ଓ ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ଥିଲେ ।

## ନାରୀ ଶିକ୍ଷାର ଉନ୍ନତି

ସମାଜରୁ ସେ ଅନେକ କୁସଂସ୍କାର ଦୂର କରି ନାରୀଶିକ୍ଷା ଉପରେ ଅଧିକ ଧ୍ୟାନ ଦେଇଥିଲେ । ସେ ସମାଜରେ ନାରୀ ଓ ପୁରୁଷଙ୍କୁ ସମାନ ଚକ୍ଷୁରେ ଦେଖୁଥିଲେ । ସେ କହୁଥିଲେ ନାରୀ ଜାତିର ଉନ୍ନତି ନ ହେଲେ ଦେଶ କଦାପି କୌଣସି କ୍ଷେତ୍ରରେ ଅଗ୍ରଣୀ ହୋଇ ପାରିବ ନାହିଁ । ସେ ଜାଣିଥିଲେ ସନ୍ତାନମାନଙ୍କୁ ସୁନାଗରିକ ଭାବେ ଗଢ଼ିତୋଳିବା ଦାୟିତ୍ୱ ନାରୀମାନଙ୍କ ହାତରେ; ତେଣୁ ନାରୀ ଉନ୍ନୟନ ନିତ୍ୟାନ୍ତ ଆବଶ୍ୟକ । ୧୯୫୫ ମସିହା ଜାନୁୟାରୀ ମାସ ୨ ତାରିଖରେ ମାନ୍ଦ୍ରାଜ୍‌ର ଏକ ବିରାଟ ସଭାରେ

ଘୋଷଣା ଦେଇ ସେ କହିଥିଲେ "ସ୍ତ୍ରୀ ଶିକ୍ଷା ପ୍ରତି ଅବହେଳା କରିବାର ଅର୍ଥ ନାରୀ ଶିକ୍ଷା ପ୍ରତି ଅବହେଳା ପ୍ରଦର୍ଶନ ସମ୍ଭବ ନୁହେଁ ।" ନାରୀ ଉନ୍ନୟନ ପାଇଁ ସେ ଅନେକ ଆଇନ୍ ପ୍ରଣୟନ କରିଥିଲେ । ଯଥା : ବିବାହ, ସଂସ୍କାର, ପାରିବାରିକ ସମ୍ପତ୍ତିରେ ନାରୀର ଭାଗ, ବିବାହ ଆଇନ୍, ଛାଡ଼ପତ୍ର ଆଇନ୍, ହିନ୍ଦୁ ଉତ୍ତରାଧିକାର ଆଇନ୍, ଯୌତୁକ ପ୍ରଥା ନିରୋଧ ଆଇନ୍ ପ୍ରଭୃତି ।

## ନେହେରୁଙ୍କ ଶିଶୁ ବତ୍ସଳତା

ନେହେରୁ ଜାଣିଥିଲେ ଯେ ଶିଶୁମାନେ ହିଁ ଦେଶର ଭବିଷ୍ୟତ ନାଗରିକ । ତେଣୁ ଶିଶୁମାନଙ୍କୁ ଅବହେଳା କରିବା ଆଦୌ ଉଚିତ୍ ନୁହେଁ । ସେ ଶିଶୁମାନଙ୍କୁ ଖୁବ୍ ଆଦର କରୁଥିଲେ । ସେ ଯେତେବେଳେ କର୍ମ ଜଞ୍ଜାଳରେ ବ୍ୟତିବ୍ୟସ୍ତ ହୋଇ ପଡୁଥିଲେ ସେତେବେଳେ ସେ ତାଙ୍କର ସମୟ ଶିଶୁମାନଙ୍କ ସହିତ କଟାଇ ଆନନ୍ଦ ଲାଭ କରୁଥିଲେ । ସେ ଶିଶୁମାନଙ୍କ ସହିତ ଗୀତ ଗାଉଥିଲେ, ନାଚୁଥିଲେ, ଖେଳୁଥିଲେ ଓ ସେହି ସମୟରେ ସେ ନିଜକୁ ଗୋଟିଏ ଶିଶୁ ଭଳି ମନେ କରୁଥିଲେ ।

ସେ ଆମ ଦେଶର ଦରିଦ୍ର, ରୁଗ୍ଣ ଓ ବୁଭୁକ୍ଷମାନଙ୍କ କଥା ଭାବି ଦୁଃଖରେ ଅଭିଭୂତ ହୋଇ ପଡୁଥିଲେ । ଶିଶୁମାନଙ୍କର କଲ୍ୟାଣ ସାଧନ ପାଇଁ ଅନେକ ଶିଶୁଭବନ ଓ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରିଥିଲେ । ଶିଶୁମାନଙ୍କ ବିକାଶ ଉପରେ ଅଧିକ ଧ୍ୟାନ ଦେଉଥିଲେ । ସେ ଶଙ୍କରସ୍ ୱିକଲି ପକ୍ଷରୁ ହେଉଥିବା ଶିଶୁ କଳା ପ୍ରତିଯୋଗିତାରେ ନିୟମିତ ଯୋଗଦାନ କରି ଆନନ୍ଦିତ ହେଉଥିଲେ । ଶିଶୁମାନଙ୍କୁ ଖୁବ୍ ଭଲ

ପାଇଥିବାରୁ ପ୍ରତିବର୍ଷ ତାଙ୍କର ଜନ୍ମ ଦିବସ (ନଭେମ୍ବର ୧୪ ତାରିଖ)କୁ 'ଶିଶୁ ଦିବସ' ରୂପେ ପାଳନ କରାଯାଉଛି ।

## ନେହେରୁଙ୍କ ଶ୍ରମିକ-କଲ୍ୟାଣ ପ୍ରତି ଦୃଷ୍ଟି

ଶ୍ରମିକମାନଙ୍କର ଦୁଃଖ, ଦୁର୍ଦ୍ଦଶା, ଅଭାବ ଅନାଟନ କଥା ଚିନ୍ତା କରି ସେ ଦୁଃଖାଭିଭୂତ ହୋଇ ପଡୁଥିଲେ । ସେ କହୁଥିଲେ ସମାଜର ଉନ୍ନତି ଶ୍ରମିକମାନଙ୍କ ଉପରେ ନିର୍ଭର କରେ । ସେମାନଙ୍କର ଅଭାବ ଅନାଟନ ଦୂର ନ ହେଲେ ଦେଶର ଉନ୍ନତି ସମ୍ଭବ ନୁହେଁ । ସେ କହୁଥିଲେ, ସେମାନଙ୍କର ସମସ୍ୟାର ସମାଧାନ ଅସୋଷ ଆଲୋଚନା ଓ ମିଳିତ ବୁଝାମଣା ଦ୍ୱାରାହିଁ ସମ୍ଭବ । ସେ ଧର୍ମଘଟ, ବନ୍ଦ, ଘେରାଉ ପ୍ରଭୃତିକୁ ପସନ୍ଦ କରୁନଥିଲେ ।

## ପ୍ରକୃତି ଉପାସକ ରୂପରେ ନେହେରୁ

ସେ ପ୍ରକୃତିର ଉପାସକ ଥିଲେ । ପ୍ରାକୃତିକ ସୌନ୍ଦର୍ଯ୍ୟରେ ସେ ଆତ୍ମହରା ହୋଇ ଉଠୁଥିଲେ । ହିମାଳୟର ପର୍ବତମାଳା, କାଶ୍ମୀରର ହ୍ରଦ, ମାନସ ସରୋବରର ସୌନ୍ଦର୍ଯ୍ୟ ଓ କୈଳାଶ ଶିଖରର-ତୁଷାରପାତ ତାଙ୍କୁ ମୁଗ୍ଧ କରିଥିଲା । ସେ ତାଙ୍କ ନିଜର ଜିନିଷପତ୍ରଗୁଡ଼ିକ ସଜାଡ଼ି ରଖୁଥିଲେ । ଯଦି ଟିକିଏ ଏପାଖ ସେପାଖ ହେଉଥିଲା ସେ ବିରକ୍ତ ହୋଇ ଉଠୁଥିଲେ ଓ ନିଜେ ତାହା ସବୁ ସଜାଡ଼ି ରଖାଉଥିଲେ । ନିଜର ପୋଷାକ ପରିଚ୍ଛଦ ପ୍ରତି ଖୁବ୍ ସଚେତନ ଥିଲେ ।

## ସବୁ ଧର୍ମପ୍ରତି ନେହେରୁଙ୍କ ସମ୍ମାନ

ନେହେରୁ ପ୍ରତ୍ୟେକ ଧର୍ମକୁ ସମ୍ମାନ ଦେଉଥିଲେ ଓ ଧର୍ମାନୁଷ୍ଠାନ ନିର୍ମାଣରେ ମଧ୍ୟ ସାହାଯ୍ୟ କରୁଥିଲେ । ମନୁଷ୍ୟ

ମନୁଷ୍ୟ ମଧ୍ୟରେ ଦେଖା ଦେଉଥିବା ଧର୍ମଗତ ଭେଦାଭେଦକୁ ଖୁବ୍ ଘୃଣା କରୁଥିଲେ । ସେ ମୂର୍ତ୍ତିପୂଜକ ନ ଥିଲେ ଓ ଦେବ ପୂଜାକୁ ପ୍ରତ୍ୟାଖ୍ୟାନ କରୁଥିଲେ । ଭଗବାନ୍ ଅଛନ୍ତି ବୋଲି ସେ ବିଶ୍ୱାସ କରୁ ନ ଥିଲେ । ସେ ମତବ୍ୟକ୍ତ କରୁଥିଲେ ଯେ ଭଗବାନ୍ ଯଦି ଅଛନ୍ତି ତେବେ ତାଙ୍କୁ ବିଶ୍ୱାସ କରିବା ବା ତାଙ୍କ ଉପରେ ଆସ୍ଥା ରଖିବା ଉଚିତ୍ ନୁହେଁ । ସେ ଧର୍ମରେ ବିଶ୍ୱାସ କରୁ ନ ଥିଲେ ସତ ମାତ୍ର ଭାରତର ଐତିହ୍ୟ, ପରମ୍ପରା ଓ ସଂସ୍କୃତିର ବିରୋଧୀ ନ ଥିଲେ । ଭାରତର ବିଭିନ୍ନ ଧର୍ମପୀଠଗୁଡ଼ିକ ଭ୍ରମଣ କରି ଉପଯୁକ୍ତ ସମ୍ମାନ ଓ ଭକ୍ତି ପ୍ରଦର୍ଶନ କରୁଥିଲେ । ଭାରତର ପୁରାତନ ସଂସ୍କୃତି ଓ ଧର୍ମକୁ ସେ ଅବମାନନା କରୁ ନ ଥିଲେ ।

ନେହେରୁ ଯଦିଓ ଜଣେ ଦେବତା ନ ଥିଲେ, ତଥାପି ଲୋକ-ପ୍ରିୟତା ଦୃଷ୍ଟିରୁ ତାଙ୍କୁ ବିଚାର କଲେ ସେ ଦେବତାଠାରୁ ଅଧିକ ପୂଜ୍ୟ । ସେ ଯେତେବେଳେ କୌଣସି କାରଣରୁ କୌଣସି ସ୍ଥାନରେ ପଦାର୍ପଣ କରୁଥିଲେ ହଜାର ହଜାର ଲୋକ ତାଙ୍କ ଦର୍ଶନ ପାଇଁ ସେଠାରେ ରୁଣ୍ଡ ହୋଇ ଯାଉଥିଲେ । ସେ ଲୋକ-ମାନଙ୍କୁ ଖୁବ୍ ଭଲ ପାଉଥିଲେ ଓ ସମସ୍ତଙ୍କୁ ସ୍ନେହ ଚକ୍ଷୁରେ ଦେଖୁଥିଲେ ଓ ସମସ୍ତଙ୍କର ଆଦରର ପାତ୍ର ହୋଇ ପାରିଥିଲେ । ସେ ତାଙ୍କ ଇଚ୍ଛାପତ୍ର (Will)ରେ ଲେଖି ଯାଇଛନ୍ତି—"ମୁଁ ଭାରତର ଜନସାଧାରଣଙ୍କଠାରୁ ଏତେ ବେଶୀ ସ୍ନେହ ଓ ଶ୍ରଦ୍ଧା ପାଇଛି ଯେ ମୁଁ ଏପରି କୌଣସି କାର୍ଯ୍ୟ କରିପାରିବି ନାହିଁ ଯାହାଦ୍ୱାରା କି ମୁଁ କ୍ଷୁଦ୍ର ଅଂଶ ପରିଶୋଧ କରିପାରିବି ଏବଂ ବାସ୍ତବରେ ଶ୍ରଦ୍ଧା ଭଳି ଏକ ମୂଲ୍ୟବାନ୍ ବସ୍ତୁର ପରିଶୋଧ ଅସମ୍ଭବ ।"

## ଶାନ୍ତିର ଦୂତ ଭାବେ ନେହେରୁ

ନେହେରୁ ଥିଲେ ଶାନ୍ତିର ଦୂତ । ତେଣୁ ସେ ବିଶ୍ୱଶାନ୍ତି ପ୍ରତିଷ୍ଠା ପାଇଁ ପ୍ରତ୍ୟକ୍ଷ ଭାବେ ପ୍ରଚାର କରିବା ସଙ୍ଗେ ସଙ୍ଗେ ପରୋକ୍ଷ ଭାବେ ଯୁଦ୍ଧ ବିରୁଦ୍ଧରେ ନିରସ୍ତ୍ରୀକରଣ ବାଣୀ ଶୁଣାଉଥିଲେ । ସେ ଶାନ୍ତିପୂର୍ଣ୍ଣ ନୀତିର ବିଶ୍ୱାସୀ ଥିଲେ ଏବଂ ପରମାଣୁ ଶକ୍ତିକୁ ଧ୍ୱଂସମୂଳକ କାର୍ଯ୍ୟରେ ନ ଲଗାଇ ଗଠନମୂଳକ କାର୍ଯ୍ୟରେ ଲଗାଇବାକୁ ଉପଦେଶ ଦେଉଥିଲେ ।

ନେହେରୁ ସେ ଜଣେ ସୁଶାସକ ଥିଲେ ତା ନୁହେଁ—ସେ ଏକାଧାରରେ ଥିଲେ ମେଳାପୀ, ଗୁଣଗ୍ରାହୀ, ପରିଶ୍ରମୀ, ଦୃଢ଼ପ୍ରତିଜ୍ଞ, ଶିଶୁବତ୍ସଳ, ଜନପ୍ରିୟ, ଆତ୍ମନିର୍ଭରଶୀଳ ଓ ଆଶାବାଦୀ । ସେ ରକ୍ଷଣଶୀଳ ଓ ଆଭିଜାତ୍ୟପୂର୍ଣ୍ଣ ପରିବାରରେ ବଢ଼ି ହାରୋ ଓ କେମ୍ବ୍ରିଜ୍ ବିଦ୍ୟାଳୟ ଓ ବିଶ୍ୱ ବିଦ୍ୟାଳୟରେ ଅଧ୍ୟୟନ କରି ମଧ୍ୟ ତାଙ୍କ ମନରେ ତିଳେ ହେଲେ ଗର୍ବ ଓ ଅଭିମାନ ନ ଥିଲା ।

ଜୀବନକାଳ ମଧ୍ୟରେ ଯାହା ସବୁ ଲୋକହିତକର କାର୍ଯ୍ୟ କରିଥିଲେ ତାହା ଜନକଲ୍ୟାଣ ପାଇଁ ଆତ୍ମୋତ୍ସର୍ଗ କରିଥିଲେ । ସେଥିପାଇଁ ସେ କେବେହେଲେ ନିଜର ବଡ଼ିମା ଦେଖାଇ ନ ଥିଲେ ବା ନିଜର ଗୁଣ କୀର୍ତ୍ତନ କରୁ ନ ଥିଲେ । ସେ ଖୁବ୍ ଉଦାରମନା ଥିଲେ ଓ ପରଦୁଃଖ-କାତର ଥିଲେ । ଗରିବମାନଙ୍କ ପାଇଁ ତାଙ୍କର ପ୍ରାଣ ସର୍ବଦା କାନ୍ଦି ଉଠୁଥିଲା । ସେମାନଙ୍କର ଉନ୍ନତି ପାଇଁ ସେ ଯଥାସାଧ୍ୟ ଚେଷ୍ଟିତ ଥିଲେ । ନିଜର ସମସ୍ତ ସୁଖ ସମ୍ପଦ ଜଳାଞ୍ଜଳି ଦେଇ ଦେଶ ସେବା ଓ ଜନସେବାରେ ସର୍ବଦା ମନପ୍ରାଣ ଢାଳି ଦେଇଥିଲେ । ସେ ସାଧାରଣ ଭାବେ ଜୀବନଯାପନ କରୁଥିଲେ ।

ତାଙ୍କଠାରେ ଭେଦାଭେଦ ଭାବ ନ ଥିଲା, ତେଣୁ ସେ ସମସ୍ତଙ୍କୁ ଆପଣାର କରି ପାରୁଥିଲେ । ମାଉଣ୍ଟବ୍ୟାଟେନ୍, କେନେଡ଼ି, କ୍ରୁଶ୍ଚେଭ୍, ଏଲିଜାବେଥ୍, ବନ୍ଦରନାୟକ ପ୍ରଭୃତିଙ୍କ ସହ ମିଶି ଯେତେ ଆନନ୍ଦ ପାଉଥିଲେ କନ୍ଧ, କୋହ୍ଲ, ସାନ୍ତାଳମାନଙ୍କ ସଙ୍ଗେ ମିଶି ମଧ୍ୟ ସେତିକ ଆନନ୍ଦ ପାଉଥିଲେ । ସେ କୁଳପତି, ସାହିତ୍ୟିକ ଓ ଶିକ୍ଷାବିତ୍‌ମାନଙ୍କୁ ଯେତିକ ସମ୍ମାନ ଓ ଆନ୍ତରିକତା ପ୍ରଦର୍ଶନ କରୁଥିଲେ—ଚିତ୍ରଶିଳ୍ପୀ, ନୃତ୍ୟନାୟିକା, କଣ୍ଠଶିଳ୍ପୀ ଓ ଚଳଚିତ୍ର ନିର୍ମାତାମାନଙ୍କୁ ମଧ୍ୟ ସେପରି ସମ୍ମାନ ଓ ଆନ୍ତରିକତା ଦେଖାଉଥିଲେ । ସେ ଯଦିଓ ମୂର୍ତ୍ତିପୂଜକ ନ ଥିଲେ ତଥାପି କୌଣସି ଧର୍ମକୁ ଅବମାନନା କରୁ ନ ଥିଲେ । ସେ ଗୀତାରେ ବିଶ୍ୱାସ କରୁଥିଲେ । ସେ ଖୁବ୍ ପରିଶ୍ରମୀ ଥିଲେ ଓ ରାତିରେ ମାତ୍ର ୪, ୫ ଘଣ୍ଟା ଶୋଉଥିଲେ । ସେ ପ୍ରତିଦିନ ବ୍ୟାୟାମ, ଯୋଗାସନ କରୁଥିଲେ ଓ ଠିକ୍ ସମୟରେ ଭୋଜନ ଓ ବିଶ୍ରାମ କରୁଥିଲେ ।

ସେ ଦୃଢ଼ପ୍ରତିଜ୍ଞ ଥିଲେ । ଯାହା କରିବାକୁ ଚାହୁଁଥିଲେ ଓ ଯାହାକୁ ଯାହା କରିବାକୁ ପ୍ରତିଶ୍ରୁତି ଦେଉଥିଲେ ତାହା ନିଶ୍ଚିତ ଭାବେ କରୁଥିଲେ । ସେ ଖୁବ୍ ନିର୍ଭୀକ, ସାହସୀ ଓ ଆଶାବାଦୀ ଥିଲେ । ସାମାଜିକ, ରାଜନୈତିକ, ଅର୍ଥନୈତିକ, ଶାରୀରିକ ପ୍ରତ୍ୟେକ କ୍ଷେତ୍ରରେ ଅଗ୍ରଣୀ ଥିଲେ । ସ୍ୱାଧୀନତା ସଂଗ୍ରାମରେ ଓ ଜାତି ନିର୍ମାଣ କାର୍ଯ୍ୟରେ ବହୁ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇଥିଲେ ମଧ୍ୟ ସେ କେବେହେଲେ ପଛଘୁଞ୍ଚା ଦେଇ ନ ଥିଲେ ।

ସମସ୍ତଙ୍କର କିଛି ନା କିଛି ଭଲ ଗୁଣ ସଙ୍ଗରେ ମନ୍ଦ ଗୁଣ ମଧ୍ୟ ଅଛି । ସେହିପରି ନେହେରୁଙ୍କର ସମସ୍ତ ଭଲ ଗୁଣ ସତ୍ତ୍ୱେ କେତୋଟି ମନ୍ଦ ଗୁଣ ମଧ୍ୟ ଥିଲା । ସେ ଖୁବ୍ ବଦ୍‌ରାଗୀ ଥିଲେ ଓ

ସାମାନ୍ୟ ଅସନ୍ତୁଷ୍ଟ ଥିଲେ । କେହି ଯଦି ତାଙ୍କ ଚିନ୍ତାଧାରାରେ ଆଘାତ ଦେଲାଭଳି କିଛି କରୁଥିଲା ସେ ସଙ୍ଗେ ସଙ୍ଗେ ତାକୁ ମୁହେଁ ମୁହେଁ ଜବାବ ଦେଉଥିଲେ ଓ ଏପରିକି ହଠାତ୍ ରାଗିଯାଇ ହାତ ମଧ୍ୟ ଉଠାଇ ଦେଉଥିଲେ । ଯେତେବେଳେ ନିଜଆଡ଼ୁ କିଛି ତ୍ରୁଟି ହୋଇଯାଉଥିଲା ସେ ଯାଇ ତାକୁ ସଙ୍ଗେ ସଙ୍ଗେ କ୍ଷମା ମାଗି ନେଉଥିଲେ । ନିଜର ଭୁଲ୍ ସ୍ୱୀକାର କରିବାକୁ ସେ କେବେହେଲେ ପଶ୍ଚାଦ୍‌ପଦ ହେଉ ନ ଥିଲେ । ନେହେରୁଙ୍କଠାରେ ଦୋଷ ତୁଳନାରେ ଗୁଣଗୁଡ଼ିକ ଅଧିକ ପରିଲକ୍ଷିତ ହେଉଥିଲା, ତେଣୁ ଅସଂଖ୍ୟ ଗୁଣାବଳୀ ଆଗରେ ସାମାନ୍ୟ କେତୋଟି ଦୋଷ ଲୁପ୍ତ ହୋଇ ଯାଉଥିଲା ।

## ଯୁଗସ୍ରଷ୍ଟା ଭାବେ ନେହେରୁ

ନେହେରୁ ଜଣେ ଯୁଗସ୍ରଷ୍ଟା ଥିଲେ । ସେ ଯେ କେବଳ ତାଙ୍କ ଅଲୌକିକ କାର୍ଯ୍ୟ ପାଇଁ ପୃଥିବୀ ବିଖ୍ୟାତ ଥିଲେ ତା ନୁହେଁ, ସେ ଭାରତୀୟ ଇତିହାସରେ ଏକ ନୂତନ ଯୁଗର ସ୍ରଷ୍ଟା ଥିଲେ । ତାଙ୍କର ଅକ୍ଲାନ୍ତ ପରିଶ୍ରମରେ ଆମ ଦେଶ ସ୍ୱାଧୀନ ହୋଇ ପାରିଥିଲା ଓ ଇଂରେଜମାନେ ଆମ ଦେଶ ଛାଡ଼ି ଚାଲିଯାଇଥିଲେ । ସେ ଟ୍ରମ୍ବେଠାରେ ପରମାଣୁ ଶକ୍ତି କେନ୍ଦ୍ର ପ୍ରତିଷ୍ଠା କରି ଦେଖାଇ ଦେଇଥିଲେ ଯେ ଭାରତ ମଧ୍ୟ ପରମାଣୁ ଶକ୍ତି ଉତ୍ପାଦନ କରିବାକୁ ଓ ରକେଟ୍‌ରେ ଗ୍ରହ ଓ ଉପଗ୍ରହରେ ସନ୍ଧାନ ବୈଜ୍ଞାନିକ ଅନୁଧ୍ୟାନ କରିବାପାଇଁ ସକ୍ଷମ ।

ନେହେରୁ ଯେ କେବଳ ଭାରତୀୟମାନଙ୍କର ପ୍ରିୟପାତ୍ର ହୋଇଥିଲେ ତା ନୁହେଁ, ସେ ତାଙ୍କର ଅଲୌକିକ ବ୍ୟକ୍ତିତ୍ୱ ଓ ଅମାୟିକ ପ୍ରକୃତି ଯୋଗୁ ସମଗ୍ର ବିଶ୍ୱର ପ୍ରିୟପାତ୍ର ହୋଇ

ପାଉଥିଲେ । ସେ ଯେ କେବଳ ଅମର ହୋଇ ରହିବେ ତା ନୁହେଁ, ତାଙ୍କର ଆଦର୍ଶ ସମଗ୍ର ବିଶ୍ୱବାସୀଙ୍କୁ ଅନୁପ୍ରାଣିତ କରିବ ଏଥିରେ ସନ୍ଦେହ ନାହିଁ ।

## ଅନ୍ତିମ ପ୍ରୟାଣ

୧୯୬୪ ମସିହା ଜାନୁୟାରୀ ମାସରେ ନେହେରୁ ଭୁବନେଶ୍ୱରଠାରେ ହେଉଥିବା କଂଗ୍ରେସ ଅଧିବେଶନରେ ଯୋଗଦେବାକୁ ଯାଇଥିଲେ । ସେଠାରେ ସେ ଅସୁସ୍ଥ ହୋଇ ପଡ଼ିଲେ । ଜାନୁୟାରୀ ୧୨ ତାରିଖରେ ସେ ଦିଲ୍ଲୀଠାରେ ପହଞ୍ଚିଲେ । ତା'ପରେ ତାଙ୍କୁ ଡେରାଡୁନ୍‌କୁ କିଛି ଦିନ କଟାଇବା ପାଇଁ ପଠାଯାଇଥିଲା । ସେଠାରୁ ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଫେରିଥିଲେ ।

୧୯୬୪ ମସିହା ମେ ମାସ ୨୭ ତାରିଖ ସକାଳ ଘ ୬-୩୦ ମିନଟ୍‌ରେ ସେ ହଠାତ୍ ସଂଜ୍ଞାହୀନ ହୋଇ ପଡ଼ିଲେ । ବେଳକୁ ବେଳ ତାଙ୍କର ଅବସ୍ଥା ଖରାପ ଆଡ଼କୁ ଗତିକଲା ଓ ସେହିଦିନ ଦିନ-୨ ଘଣ୍ଟା ସମୟରେ ସେ ସମସ୍ତଙ୍କୁ ଛାଡ଼ି ଏହି ସଂସାରରୁ ବିଦାୟ ନେଇଥିଲେ ।

ଏହି ଦାରୁଣ ସମ୍ବାଦ ପାଇ ବିଶ୍ୱସାରା ଶୋକର ଛାୟା ଖେଳି ଯାଇଥିଲା । ସମସ୍ତେ ବିସ୍ମୟରେ ସ୍ତବ୍ଧ ଓ ନିର୍ବାକ୍ ହୋଇ ଯାଇଥିଲେ । ସମସ୍ତଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇ ଯାଇଥିଲା । କେତେକ ଲୋକ, ବୁଢ଼ା, ପିଲା ଏହି ସମ୍ବାଦ ପାଇ ଖୁବ୍ ବଡ଼ ପାଟିରେ କାନ୍ଦି କାନ୍ଦି କହିଥିଲେ—ଆମର ପ୍ରିୟ 'ଚାଚା ନେହେରୁ' ଆଜି ଏ ସଂସାରରେ ନାହାନ୍ତି । ବାୟୁ ପ୍ରବାହିତ ହେଲାପରି ଏହି

ସମ୍ବାଦ ତତ୍‌କ୍ଷଣାତ୍ ଗୃହଅଭ୍ୟନ୍ତରେ ପ୍ରଚାରିତ ହୋଇ ଯାଇଥିଲା ଓ ସମସ୍ତ ଦୋକାନ, ବଜାର, ସ୍କୁଲ, କଲେଜ, ଅଫିସ, ପ୍ରେକ୍ଷାଳୟ ବନ୍ଦ ହୋଇଯାଇଥିଲା । ଜାତୀୟ ପତାକାକୁ ସବୁ ସ୍ଥାନରେ ଅର୍ଦ୍ଧନମିତ କରାଯାଇଥିଲା ।

ଡ. ରାଧାକୃଷ୍ଣନ୍‌ଙ୍କ ମୁଖରୁ ଝରିପଡ଼ିଥିଲା "ଆମ ଦେଶର ଇତିହାସରେ ଗୋଟିଏ ଯୁଗର ଅବସାନ ଘଟିଲା" । ଭାରତବାସୀ ତାଙ୍କର ପରମପୂଜ୍ୟ ପ୍ରିୟ ନେତାଙ୍କୁ ହରାଇ ଦୁଃଖରେ ମ୍ରିୟମାଣ ହୋଇ ନିଜକୁ ବନ୍ଧୁହୀନ, ଅନାଥ, ଅରକ୍ଷିତ ଓ ଅସହାୟ ମନେ କରୁଥିଲେ ।

ପ୍ରକୃତି ମଧ୍ୟ ତାଙ୍କୁ ହରାଇ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ସେଦିନ ଆକାଶ ମେଘାଚ୍ଛନ୍ନ ଥିଲା ଓ ସୂର୍ଯ୍ୟଦେବତା ଆଦୌ ଦେଖା ଦେଇ ନ ଥିଲେ ।

ଏ ମର ସଂସାରରେ ଜନ୍ମଗ୍ରହଣ କରି ଦିନେ ନା ଦିନେ ଆରପାରିକୁ ଯିବାକୁ ପଡ଼େ, ଏକଥା ଜାଣି ମଧ୍ୟ ନେହେରୁ ଏ ଦେଶ ଓ ତାଙ୍କର ପ୍ରିୟଜନମାନଙ୍କୁ ଛାଡ଼ି ଆରପାରିକୁ ଯିବାକୁ ଆଦୌ ଇଚ୍ଛାପ୍ରକାଶ କରୁ ନ ଥିଲେ; କାରଣ ମୃତ୍ୟୁର ଠିକ ୭ ଦିନ ପୂର୍ବରୁ ସେ କହିଥିଲେ 'ମୋର ଜୀବନକାଳ ଏତେ ଶୀଘ୍ର ଶେଷ ହୋଇଯାଉନ ।'

## ଅନ୍ତିମ ଅଭିଳାଷ

ପରଲୋକ ଯାତ୍ରାର କିଛି ଦିନ ପୂର୍ବରୁ ତାଙ୍କର ଅନ୍ତିମ ଅଭିଳାଷ ବ୍ୟକ୍ତ କରି ଏକ ଇଚ୍ଛାପତ୍ର ( Will ) ସ୍ୱାକ୍ଷରିତ କରି

ଯାଇଥିଲେ । ସେଥିରେ ଲେଖାଥିଲା—'ମୋର ଚିତାଭସ୍ମକୁ ଉଡ଼ାଜାହାଜରେ ଆକାଶରେ ବହୁ ଉଚ୍ଚକୁ ନେଇଯାଇ ବିସ୍ତୃତ ଉନ୍ମୁକ୍ତ କ୍ଷେତ୍ରରେ ବୁଣିଦେବ । ଭାରତର ପ୍ରତି ଧୂଳିକଣାରେ ସେ ଭସ୍ମ ମିଶିଯାଉ, ଏହାହିଁ ମୋର ଶେଷ ଅଭିଳାଷ ।'

ତାଙ୍କର ଶେଷ ଦର୍ଶନ ପାଇଁ ତାଙ୍କ ମରଶରୀରକୁ ତାଙ୍କ ବାସଭବନରେ ୨୮ ତାରିଖ ଦିନ ଏକ ଘଣ୍ଟା ପର୍ଯ୍ୟନ୍ତ ରଖା ଯାଇଥିଲା । ୨୮ ତାରିଖ ଠିକ୍ ଦିନ ଏକ ଘଣ୍ଟା ସମୟରେ ଏକ ବିରାଟ ଶୋଭାଯାତ୍ରାରେ ତାଙ୍କ ଶବାଧାରକୁ ରାଜଘାଟକୁ ଶବସତ୍କାର ପାଇଁ ନିଆଯାଇଥିଲା । ଏହି ଶୋଭାଯାତ୍ରାରେ ଭାରତର ଓ ବିଦେଶର ଅନେକ ବିଶିଷ୍ଟ ରାଷ୍ଟ୍ରନାୟକ, ପ୍ରତିନିଧି, ମନ୍ତ୍ରୀବୃନ୍ଦ, ପ୍ରଧାନମନ୍ତ୍ରୀ ଓ ଲକ୍ଷ ଲକ୍ଷ ଜନତା ତାଙ୍କର ଅନ୍ତିମ ଦର୍ଶନ ପାଇଁ ରୁଣ୍ଡ ହୋଇଥିଲେ । ତାଙ୍କର ନାତି ସଞ୍ଜୟ ମେ ୨୮ ତାରିଖ ୪୪-୩୫ ମିନିଟ୍‌ରେ ନେହେରୁଙ୍କ ମୁଖରେ ଚିତାଗ୍ନି ଦେଇଥିଲେ । ଶେଷ ସମ୍ମାନ ପ୍ରଦର୍ଶନ ପାଇଁ ୩ଟି ତୋପ ଧ୍ୱନି ସହ ବିଗୁଲ୍ ବାଜି ଉଠିଥିଲା । ଶୋକାଭିଭୂତ ଅଶ୍ରୁଳ ଜନତାଙ୍କ ମୁଖରୁ ସ୍ୱର ପଡ଼ୁଥିଲା 'ନେହେରୁ ଅମର ହେ ।'

ନେହେରୁଙ୍କର ଶେଷ ଅଭିଳାଷ କ୍ରମେ ତାଙ୍କର ଦଶାହ ଦିନ ଚିତାଭସ୍ମ ପ୍ରୟାଗର ଗଙ୍ଗା, ଯମୁନା ପ୍ରଭୃତି ରାଜ୍ୟର ଶତାଧିକ ପୁଣ୍ୟଘାଟରେ ବିସର୍ଜନ କରାଯାଇଥିଲା ଓ କୃଷି କ୍ଷେତ୍ରରେ ମଧ୍ୟ ଛିଞ୍ଚି ଦିଆଯାଇଥିଲା ।

—ଶେଷ—

